ଓଡ଼ିଶା ମାଧ୍ୟମିକ ଶିକ୍ଷାବୋର୍ଡ଼ଙ୍କ ନୋଟିଫିକେଶନ ନଂ ୨୬୨୦ (୩୮)
ତା ୩।୬।୬୯ ଶଖର ନର୍ଦ୍ଦେଶକ୍ରମେ ପାଠ୍ୟପୁସ୍ତକ ରୂପେ ମଞ୍ଜୁର ପ୍ରାପ୍ତ ।

# ପୃଥିବୀ
# ଇତିହାସ ପରିଚୟ

( ଅଷ୍ଟମ ଶ୍ରେଣୀ ନିମନ୍ତେ )

ଲେଖକ :
**ଶ୍ରୀ କେଶବଚନ୍ଦ୍ର ପଣ୍ଡା**, ଏମ୍. ଏ. ଏମ୍. ଇଡ୍
ଅଧ୍ୟାପକ, ଷ୍ଟେଟ୍ ଇନ୍ଷ୍ଟିଚ୍ୟୁଟ ଅଫ୍ ଏଡ୍ଡୁକେଶନ,
ଭୁବନେଶ୍ୱର

ନୂତନ ମୁଦ୍ରଣ—୧୯୭୯

ପ୍ରକାଶକ :
**ଓଡ଼ିଶା ବୁକ୍ ଷ୍ଟୋର**
**ବିନୋଦ ବିହାରୀ, କଟକ-୨**
ଏବଂ
**ଅଶୋକ ନଗର, ଭୁବନେଶ୍ୱର-୧**

ମୂଲ୍ୟ—ଦୁଇଟଙ୍କା ମାତ୍ର

# ସୂଚୀପତ୍ର

ବିଷୟ | ପୃଷ୍ଠା

| ବିଷୟ | ପୃଷ୍ଠା |
| --- | --- |

## ପ୍ରଥମ ଅଧ୍ୟାୟ

## ପ୍ରକୃତ ମନୁଷ୍ୟ ଓ ପୁରାତନ ପ୍ରସ୍ତରଯୁଗ

ଆମ୍ଭମାନଙ୍କର ବାସସ୍ଥଳୀ ଏହି ପୃଥିବୀରେ ଜୀବଜଗତର ସୃଷ୍ଟି କେବେ ଓ କିପରି ହେଲା, ତାହା ଠିକ୍ ଭାବରେ କହିବା ଅସମ୍ଭବ । ବୈଜ୍ଞାନିକମାନଙ୍କ ମତରେ ପ୍ରାୟ ଦୁଇଶହ କୋଟି ବର୍ଷ ପୂର୍ବେ ପୃଥିବୀର ସୃଷ୍ଟି ହୋଇଛି । ପ୍ରଥମେ ଏହା ଏକ ଜ୍ୱଳନ୍ତ ବାଷ୍ପପିଣ୍ଡ ଆକାରରେ ସୂର୍ଯ୍ୟଙ୍କ ଦେହରୁ ଖସି ପଡ଼ିଲା ଓ ସୂର୍ଯ୍ୟଙ୍କ ବଳୀୟାନ୍ ମାଧ୍ୟାକର୍ଷଣ ଶକ୍ତିଯୋଗୁଁ ଏହା ସୂର୍ଯ୍ୟଙ୍କ ଚାରିପାଖରେ ଘୂରିବାକୁ ଲାଗିଲା । ଏହି ବାଷ୍ପପିଣ୍ଡ କ୍ରମେ ଶୀତଳ ଓ ଶକ୍ତ ହୋଇ ଆମ୍ଭମାନଙ୍କ ପୃଥିବୀରେ ପରିଣତ ହେଲା । ପୃଥିବୀ ପୃଷ୍ଠର ଚତୁର୍ଦ୍ଦିଗରେ ଘେରି ରହିଥିବା ଉଷ୍ମ ବାଷ୍ପମଣ୍ଡଳ କ୍ରମେ ଶୀତଳ ହୋଇ ବର୍ଷା ଆକାରରେ ଭୂପୃଷ୍ଠରେ ପତିତ ହେବାକୁ ଲାଗିଲା । ହଜାର ହଜାର ବର୍ଷ ଧରି ବର୍ଷା ହେବା ଫଳରେ ପୃଥିବୀପୃଷ୍ଠ ଆହୁରି ଶୀତଳ ହୋଇ ଉଚ୍ଚସ୍ଥାନଗୁଡ଼ିକ ସ୍ଥଳଭାଗରେ ଓ ଗଭୀର ସ୍ଥାନଗୁଡ଼ିକ ସମୁଦ୍ର ଓ ହ୍ରଦ ପ୍ରଭୃତିରେ ପରିଣତ ହେଲା । ପୃଥିବୀପୃଷ୍ଠରେ ଜଳ ଦେଖାଯିବା ପରେ କ୍ରମେ ଜୀବସୃଷ୍ଟି ଆରମ୍ଭ ହେଲା । ବିଶେଷଜ୍ଞମାନଙ୍କ ମତରେ ପ୍ରଥମେ ସମୁଦ୍ର ଜଳରେ ଏକପ୍ରକାର ଅଙ୍ଗପ୍ରତ୍ୟଙ୍ଗହୀନ ଭାସମାନ ଜୀବ ଦେଖାଯାଇଥିଲେ । ଏହି ପ୍ରକାର ଜୀବକୁ ଜେଲି (Jelly) କୁହାଯାଏ । ଜେଲିର କ୍ରମବିକାଶ ଫଳରେ ଲକ୍ଷ ଲକ୍ଷ ବର୍ଷ ପରେ ଜଳରେ କ୍ଷୁଦ୍ର ମତ୍ସ୍ୟଜାତୀୟ ଅସଂଖ୍ୟ ଜୀବ ବାହାରିଲେ ।

ସମୁଦ୍ରର ମତ୍ସ୍ୟଜାତୀୟ ଜୀବରୁ ଜଳ ଓ ସ୍ଥଳ ଉଭୟଚର ପ୍ରାଣୀ ଜାତହେଲେ ଏବଂ କାଳକ୍ରମେ ଶ୍ରେଷ୍ଠ ବଡ଼ ସରୀସୃପ ଜାତୀୟ ପ୍ରାଣୀମାନଙ୍କର ସୃଷ୍ଟି ହେଲା । ବହୁକାଳ ପରେ ନାନା ପ୍ରକାର ପକ୍ଷୀ ଓ ସ୍ତନ୍ୟପାୟୀ ପ୍ରାଣୀମାନେ ଦେଖାଦେଲେ ।

ନାନା ପରିବର୍ତ୍ତନ ମଧ୍ୟରେ ଜୀବଜଗତର କ୍ରମବିକାଶ ଫଳରେ ଲକ୍ଷ ଲକ୍ଷ ବର୍ଷ ପରେ ପୃଥିବୀ ପୃଷ୍ଠରେ ବାନରଜାତୀୟ ଏକପ୍ରକାର ଜୀବ ଦେଖାଗଲେ । ବାନରଜାତୀୟ ଜୀବଙ୍କର ବହୁ ପରିବର୍ତ୍ତନ ଘଟି ଆଜକୁ ପ୍ରାୟ ପାଞ୍ଚ ଲକ୍ଷ ବର୍ଷ ପୂର୍ବେ ଏକ ପ୍ରକାର **ବାନରାକୃତି ମନୁଷ୍ୟ** ଦେଖାଗଲେ । ବିଶିଷ୍ଟ ବୈଜ୍ଞାନିକ ଚାର୍ଲସ ଡାରଉଇନ୍‌ଙ୍କ ମତ ଅନୁସାରେ ଜୀବଜଗତର ଏହି ପ୍ରକାର କ୍ରମାଗତ ପରିବର୍ତ୍ତନକୁ **ବିବର୍ତ୍ତନବାଦ** ବୋଲିଯାଏ । ବାନରାକୃତି ମନୁଷ୍ୟଙ୍କୁ **ଆଦି ମନୁଷ୍ୟ** ବୋଲି ଧରାଯାଇପାରେ ।

ୟୁରୋପର **ନିଏଣ୍ଡ୍ରାର୍ଥାଲ** ନାମକ ଏକ ସ୍ଥାନରୁ ସେ କାଳର ମନୁଷ୍ୟର ଅସ୍ଥି ଓ କଙ୍କାଳ ମିଳିଅଛି । ବୈଜ୍ଞାନିକମାନେ ସେଗୁଡ଼ିକୁ ପରୀକ୍ଷାକରି ମତପ୍ରକାଶ କରିଛନ୍ତି ଯେ ନିଏଣ୍ଡ୍ରାର୍ଥାଲ ମନୁଷ୍ୟମାନଙ୍କ ମେରୁଦଣ୍ଡ ବକ୍ର ଥିଲା । ସେମାନେ ସିଧା ଠିଆହୋଇ ନ ପାରି ଆଗକୁ ଡିଙ୍କି ଡିଙ୍କି ଚାଲୁଥିଲେ । ସେମାନଙ୍କ ତଳ ପାଟିରେ ହାଡ଼ ନ ଥିବାରୁ ସେମାନେ ସମ୍ଭବତଃ କଥା କହି ପାରୁ ନ ଥିଲେ । ସେମାନେ



[ ନିଏଣ୍ଡ୍ରାର୍ଥାଲ ମନୁଷ୍ୟ ]

ଦେଖିବାକୁ କଦାକାର ଥିଲେ । ସେମାନଙ୍କ ଶରୀର ଘନ ଲୋମାବୃତ ଥିଲା । ସୁତରାଂ ସେମାନେ ପ୍ରକୃତ ମନୁଷ୍ୟର ପୂର୍ବବର୍ତ୍ତୀ ଏକ ପ୍ରକାର **ଅପୂର୍ଣ୍ଣାଙ୍ଗ ମାନବ** ଥିଲେ ।

## ପ୍ରଥମ ପ୍ରକୃତ ମନୁଷ୍ୟ

ନାନା ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହେବା ହେତୁ କ୍ରମେ ନିଏଣ୍ଡାର୍ଥାଲ ମାନବଜାତି ପୃଥିବୀ ପୃଷ୍ଠରୁ ଲୋପ ପାଇଲେ । ସେମାନଙ୍କ ପରେ ଆଜକୁ ପ୍ରାୟ ପଚିଶ ହଜାର ବର୍ଷ ପୂର୍ବେ ପୂର୍ଣ୍ଣାଙ୍ଗ ମାନବ ଜାତିର ଅଭ୍ୟୁଦୟ ହୋଇଥିଲା । ୟୁରୋପର ନାନା ସ୍ଥାନରୁ ଏହି ଲୋକମାନଙ୍କର କଙ୍କାଳ ଓ ବ୍ୟବହୃତ ପଦାର୍ଥମାନ ବାହାରିଛି । ବିଶେଷଜ୍ଞମାନଙ୍କ ମତରେ ସେମାନେ ସିଧାହୋଇ



[ ବିଭିନ୍ନ ପ୍ରକାର ପ୍ରକୃତ ମନୁଷ୍ୟ ]

ଚାଲିପାରୁ ଥିଲେ ଓ କଥା କହି ପାରୁଥିଲେ । ସେମାନେ ନିଏଣ୍ଡାର୍ଥାଲ ମନୁଷ୍ୟମାନଙ୍କ ଅପେକ୍ଷା ଦେଖିବାକୁ ଅଧିକ ସୁନ୍ଦର ଥିଲେ ଏବଂ ସେମାନଙ୍କ ଅପେକ୍ଷା ଅଧିକ ବୁଦ୍ଧିମାନ୍ ଥିଲେ । ସେମାନଙ୍କ ମସ୍ତିଷ୍କ ବଡ଼ ଓ ସୁଗଠିତ ହୋଇଥିଲା । ତେଣୁ ସେମାନଙ୍କୁ ପ୍ରଥମ **ପ୍ରକୃତ ମନୁଷ୍ୟ** ବୋଲି ଧରାଯାଏ ।

# ପୁରାତନ ପ୍ରସ୍ତରଯୁଗ

ମନୁଷ୍ୟ ସୃଷ୍ଟି ହେବା ପରେ ସେ ଜୀବନ ଧାରଣ କରିବା ପାଇଁ ଯେଉଁସବୁ ଉପାୟ ଅବଲମ୍ବନ କଲା ସେଥିରୁ ତାହାର ସଭ୍ୟତାର ବିକାଶ ହେଲା । ସେ ହିଂସ୍ର ଜନ୍ତୁର ଆକ୍ରମଣରୁ ନିଜକୁ ରକ୍ଷା କରିବା ନିମନ୍ତେ ଏବଂ ଅନ୍ୟ ଜୀବଜନ୍ତୁ ମାରି ତାହାର ମାଂସ ଖାଇ ଜୀବନଧାରଣ କରିବା ନିମନ୍ତେ କେତେକ ଅସ୍ତ୍ର ବ୍ୟବହାର କଲା । ସେ ପୃଥିବୀ ପୃଷ୍ଠରେ ସହଜଲବ୍ଧ ଟେକା ଓ ଖଣ୍ଡିଆ-ଖାବଡ଼ା ପଥରସବୁ ଅଦାଢ଼ୁଆ ଅସ୍ତ୍ରଶସ୍ତ୍ର ରୂପେ ବ୍ୟବହାର କରିବାକୁ ଲାଗିଲା । ତେଣୁ ସେହି ଲୋକଙ୍କୁ ପୁରାତନ ପ୍ରସ୍ତର ଯୁଗର ଲୋକବୋଲି କୁହାଯାଏ ।



[ପ୍ରାଚୀନ ପ୍ରସ୍ତର ଯୁଗର ମନୁଷ୍ୟ]

ପୁରାତନ ପ୍ରସ୍ତର ଯୁଗର ଲୋକମାନେ ପଥରକୁ ଭାଙ୍ଗି ଅସ୍ତ୍ରଶସ୍ତ୍ର ରୂପେ ବ୍ୟବହାର କରୁଥିଲେ ମଧ୍ୟ ସେଗୁଡ଼ିକୁ ଘଷି ମାଜି ଚିକ୍କଣ କରିବା ସେମାନଙ୍କୁ ଜଣା ନ ଥିଲା । ସେମାନେ ବଣ-ଜଙ୍ଗଲରେ ଥିବା ବଡ଼ ବଡ଼ ଗଛର କୋରଡ଼ ଓ ପର୍ବତ-ଗୁହାରେ ବାସ କରୁଥିଲେ ଏବଂ ଫଳ ମୂଳ ଓ ଜୀବଜନ୍ତୁଙ୍କ ମାଂସ ଖାଇ ଜୀବନଧାରଣ କରୁଥିଲେ । କାଳକ୍ରମେ ସେମାନେ ଚମଡ଼ାର ତମ୍ବୁମାନଙ୍କରେ ପରିବାରବଦ୍ଧ ହୋଇ ବାସ କଲେ । ଶୀତ ହାଉରୁ ରକ୍ଷା ପାଇବାପାଇଁ ସେମାନେ ଦେହକୁ

ଚମଡ଼ାରେ ଆବୃତ କଲେ । ସେମାନେ ପ୍ରଥମେ ନିଆଁର ବ୍ୟବହାର ଜାଣି ନ ଥିଲେ; କ୍ରମେ ସେମାନେ ନିଆଁର ବ୍ୟବହାର ଜାଣି ମାଂସ ସେକ ଖାଇଲେ । ଦେହର ସୌନ୍ଦର୍ଯ୍ୟ ବଢ଼ାଇବାପାଇଁ ସେମାନେ ଶାମୁକାର ମାଳ ପିନ୍ଧୁଥିଲେ ଓ ଶରୀରକୁ ନାନା-ରଙ୍ଗରେ ରଙ୍ଗାଉଥିଲେ । ସେମାନେ ପଶୁପାଳନ ଓ କୃଷି ବାସ



[ ପ୍ରାଚୀନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର ]

ଜାଣି ନ ଥିଲେ । ଖୁବ୍ ସମ୍ଭବତଃ ସେମାନେ ଧନୁ ଓ ଶରର ବ୍ୟବହାର ଉଦ୍ଭାବନ କଲେ । ସେମାନେ ହାତରେ ସୂଚୀକାର୍ଯ୍ୟ କରିବା ଶିଖିଲେ । ସେମାନେ ପର୍ବତ ଗୁହାରେ, ହାତୀଦାନ୍ତ ଉପରେ ଓ ବଡ଼ ବଡ଼ ଜନ୍ତୁଙ୍କ ହାଡ଼ ଉପରେ ସୁନ୍ଦର ସୁନ୍ଦର ଚିତ୍ର ଆଙ୍କୁଥିଲେ । ଚିତ୍ର ଉପରେ ନାନାପ୍ରକାର ରଙ୍ଗ ଲଗାଇ ସେଗୁଡ଼ିକୁ ଚିତ୍ତାକର୍ଷକ କରିବାପାଇଁ ଚେଷ୍ଟା କରୁଥିଲେ । ସୁତରାଂ ପ୍ରାଚୀନ ପ୍ରସ୍ତର ଯୁଗରେ ମାନବ ସଭ୍ୟତାର ଆରମ୍ଭ ହେଲା ।

---

# ଦ୍ୱିତୀୟ ଅଧ୍ୟାୟ

## ଭୂମିକର୍ଷଣ ଓ ବସତି ସ୍ଥାପନ

### ନୂତନ ପ୍ରସ୍ତର ଯୁଗ

ପ୍ରାୟ ଦଶ ବାର ହଜାର ବର୍ଷ ପୂର୍ବେ ପୃଥିବୀରେ ଅପେକ୍ଷାକୃତ ଉନ୍ନତ ଧରଣର ମାନବ ଦେଖାଗଲେ । ସେମାନେ ଅମସୃଣ ପ୍ରସ୍ତର ଖଣ୍ଡକୁ ଘଷି ମାଜି ମସୃଣ ଓ ଧାରୁଆ ଅସ୍ତ୍ର ଶସ୍ତ୍ର ତିଆରିକରି ଜାଣିଲେ । ସେମାନେ ଗୃହ୍ଵବଦା ଅନୁସାରେ ପଥର ଓ ହାଡ଼ରେ ନାନା ପ୍ରକାର ସୁନ୍ଦର ଓ ମଜଭୁତ ଅସ୍ତ୍ରଶସ୍ତ୍ର ଏବଂ ଅନ୍ୟାନ୍ୟ ଦ୍ରବ୍ୟ ନିର୍ମାଣ କରି ଶିଖିଲେ । ତେଣୁ ସେମାନଙ୍କ ସଭ୍ୟତାକୁ **ନୂତନ ପ୍ରସ୍ତରଯୁଗର** ସଭ୍ୟତା ବୋଲି କୁହାଯାଏ ।

**ଭୂମିକର୍ଷଣ** ଓ **ପଶୁପାଳନ** ଏହି ଯୁଗର ଉନ୍ନତ ସଭ୍ୟତାର ନିଦର୍ଶନ । କୃଷିକାର୍ଯ୍ୟ ଦ୍ୱାରା ଅଳ୍ପ ପରିଶ୍ରମରେ ବେଶୀ ଖାଦ୍ୟ ସଂଗୃହୀତ ହୋଇ ପାରିଲା । ତେଣୁ ଖାଦ୍ୟ ପାଇଁ ଶିକାର ଅନ୍ୱେଷଣରେ ଲୋକମାନଙ୍କୁ ଆଉ ଇତସ୍ତତଃ ଭ୍ରମଣ କରିବାକୁ ପଡ଼ିଲା ନାହିଁ । ଏହା ଫଳରେ ମନୁଷ୍ୟମାନେ ଖାଦ୍ୟ ସଂଗ୍ରହ ଅବସ୍ଥାରୁ କ୍ରମେ ଖାଦ୍ୟ ଉତ୍ପାଦନ କରିବା ଅବସ୍ଥାକୁ ଆସିଲେ । ଖାଦ୍ୟଶସ୍ୟ ଉତ୍ପାଦନ ପାଇଁ କୃଷକମାନଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନରେ ରହିବାକୁ ପଡ଼ିଲା । ଉର୍ବର ମୃତ୍ତିକା ଓ ଜଳର ସୁବିଧା ଥିବା ସ୍ଥାନ କୃଷିପାଇଁ ଉପଯୁକ୍ତ ବୋଲି ସେମାନେ ଜାଣିଲେ । କୃଷିଲବ୍ଧ ଖାଦ୍ୟ ଦ୍ରବ୍ୟ ସଂରକ୍ଷଣ ପାଇଁ ସେମାନେ ଖୋଳ-

ସ୍ଥାନରେ ଝାଟି ମାଟିରେ ଗ୍ରେଟ ଗ୍ରେଟ କୁଡ଼ିଆ ନିର୍ମାଣ କରି ସେଠାରେ ସ୍ଥାୟୀ ବାସିନ୍ଦା ଭାବରେ ରହିଲେ । ଏହାହିଁ ଲୋକମାନଙ୍କର **ବସତି ସ୍ଥାପନର** ପ୍ରଥମ ଅବସ୍ଥା ।



[ ନୂତନ ପ୍ରସ୍ତରଯୁଗର ଅସ୍ତ୍ରଶସ୍ତ୍ର ].

କୃଷି କେତେକ ଲୋକଙ୍କର ସାଧାରଣ ଜୀବିକା ହେଲା । ସେମାନେ କୃଷିର ଉନ୍ନତି ପାଇଁ ଉଦ୍ୟମ କଲେ । ଫଳରେ କିଛିକାଳ ପରେ ସେମାନେ ଗୋରୁ, ଘୋଡ଼ା, ମଇଁଷି ପ୍ରଭୃତି ପଶୁମାନଙ୍କର ସାହାଯ୍ୟରେ ଚାଷ କଲେ ଓ ସେମାନଙ୍କୁ ପାଳିଲେ । ଘୋଡ଼ା ସେତେବେଳେ ମନୁଷ୍ୟର ପ୍ରଧାନ ଆବଶ୍ୟକୀୟ ପଶୁ ଥିଲା । ମନୁଷ୍ୟମାନେ ଘୋଡ଼ା ଦ୍ୱାରା ଚାଷ କରୁଥିଲେ ଓ ଘୋଡ଼ା ପିଠିରେ ଜିନିଷ ଲଦି ଏକ ସ୍ଥାନରୁ ଅନ୍ୟସ୍ଥାନକୁ ନେଉଥିଲେ । ସେମାନେ ଗୃହପାଳିତ ପଶୁମାନଙ୍କୁ ଚାଷ କାର୍ଯ୍ୟରେ ଲଗାଇବା ସଙ୍ଗେ ସଙ୍ଗେ ସେଗୁଡ଼ିକର ମାଂସ ଓ ଦୁଗ୍ଧ ଖାଇଲେ ।

ନୂତନ ପ୍ରସ୍ତର ଯୁଗର ମନୁଷ୍ୟମାନେ ମାଟିପାତ୍ର ନିର୍ମାଣ କରି ଜାଣିଲେ ଏବଂ ବାଉଁଶ, ନାନା ପ୍ରକାର ଲତା ଓ କାଠି ସାହାଯ୍ୟରେ ପାଛିଆ, ଟୋକେଇ ଆଦି ବୁଣି ଜାଣିଲେ । ଏହି ପାତ୍ରଗୁଡ଼ିକରେ ବଳକା ଖାଦ୍ୟଶସ୍ୟ ଭବିଷ୍ୟତପାଇଁ ସାଇତି ରଖିବା ସୁବିଧା ହେଲା । ଅବସର ସମୟରେ ସେମାନେ ନାନାପ୍ରକାର ଚିତ୍ର ଅଙ୍କନ କରୁଥିଲେ । ସେ ଯୁଗର ଚିତ୍ରକଳାରେ ଘୋଡ଼ାର ଛବି ବିଶେଷ ଭାବରେ ଦେଖିବାକୁ ମିଳେ । ସେମାନେ ପ୍ରଥମେ ପଶୁର ଚମଡ଼ା ବସ୍ତ୍ରରୂପେ ବ୍ୟବହାର କରୁଥିଲେ; ମାତ୍ର କାଳକ୍ରମେ ଉଦ୍ଭିଦର ତନ୍ତୁରେ ମୋଟା ଲୁଗା ତିଆରି କଲେ । ସେମାନେ ନିଆଁର ବ୍ୟବହାର ଜାଣିଥିବାରୁ ମାଟିପାତ୍ର ତିଆରିକରି ସେଥିରେ ଖାଦ୍ୟଦ୍ରବ୍ୟ ରାନ୍ଧି ଖାଇଲେ । କ୍ରମେ ମନୁଷ୍ୟର ବଂଶ ବୃଦ୍ଧି ହେବାକୁ ଲଗିଲା ଏବଂ ଦଳ ଦଳ ମନୁଷ୍ୟ ନୂତନ ବସତି ସ୍ଥାପନ ନିମନ୍ତେ ବିଭିନ୍ନ ସ୍ଥାନ ଖୋଜି ବୁଲିଲେ । ପୃଥିବୀର ବିଭିନ୍ନ ସ୍ଥାନରେ ନଦୀକୂଳ ଓ ହ୍ରଦକୂଳର







[ ଭୂମିକର୍ଷଣ ଓ ବସତି ସ୍ଥାପନ ]

ଉର୍ବର ଅଞ୍ଚଳରେ ନୂତନ୍ ଜନବସତି ଗଢ଼ିଉଠିଲା । ଏହାପରି ନୂତନ ପ୍ରସ୍ତର ଯୁଗରେ ସଭ୍ୟତା ବିକାଶ ଲାଭକଲା ଓ ମାନବ ସମାଜର ଅଗ୍ରଗତି ଘଟିଲା ।

---

## ତୃତୀୟ ଅଧ୍ୟାୟ

### ସ୍ଥାୟୀ ବାସିନ୍ଦା ଓ ଯାଯାବର ଜାତି

ପୂର୍ବରୁ କୁହାଯାଇଛି ଯେ ପ୍ରଥମେ ନଦୀ ଓ ହ୍ରଦକୂଳସ୍ଥ ଉର୍ବର ସମତଳ ଅଞ୍ଚଳରେ ମନୁଷ୍ୟମାନେ ବାସସ୍ଥାପନ କରି ଜୀବିକା ନିର୍ବାହ କରିବାକୁ ଲାଗିଲେ । ଉତ୍ତର ଆଫ୍ରିକାର ନୀଳନଦୀ ଉପତ୍ୟକାରେ, ପଶ୍ଚିମ ଏସିଆର ଟାଇଗ୍ରୀସ୍ ଓ ଇଉଫ୍ରେଟିସ୍ ନଦୀଦ୍ୱୟର ଉପତ୍ୟକାରେ, ଭାରତର ସିନ୍ଧୁ ଉପତ୍ୟକାରେ, ଚୀନ ଦେଶର ହୋୟାଂ ହୋ ଓ ୟାଂସିକିୟାଂ ନଦୀ ଉପତ୍ୟକାରେ ପ୍ରଥମେ ମାନବ ବସତିମାନ ସ୍ଥାପିତ ହୋଇଥିଲା । କାଳକ୍ରମେ ଭୂମଧ୍ୟସାଗର ଉପକୂଳ ଅଞ୍ଚଳ ଓ ଦ୍ୱୀପମାନଙ୍କରେ ଏବଂ କୃଷ୍ଣସାଗର ଉପକୂଳବର୍ତ୍ତୀ ଅଞ୍ଚଳରେ ମାନବ ବସତି ପ୍ରସାରିତ ହୋଇଥିଲା । କୃଷିକାର୍ଯ୍ୟ କରି ସ୍ଥାୟୀଭାବରେ ଯେଉଁମାନେ ବସତିସ୍ଥାପନ କଲେ ସେମାନଙ୍କୁ **ସ୍ଥାୟୀ ବାସିନ୍ଦା** କୁହାଗଲା ।

ସ୍ଥାୟୀଭାବରେ ବସବାସ କରିବା ପରେ ମନୁଷ୍ୟ ନିଜକୁ ନିରାପଦ ମନେକଲା । ଶାନ୍ତିରେ କାଳ ଯାପନ କରିବାର ସୁଯୋଗ

ପାଇବାରୁ ସ୍ଥାୟୀ ବାସିନ୍ଦାମାନେ ନାନା ଢଗରେ ଉନ୍ନତି କରିବାକୁ ଚିନ୍ତା କଲେ । ଏହାଫଳରେ ମାନବ ସଭ୍ୟତାର ବିଶେଷ ଅଗ୍ରଗତି ହୋଇ ପାରିଥିଲା । ଲୋକେ ପ୍ରଥମେ କୁଡ଼ିଆରେ

[ ପ୍ରାଚୀନ ନଦୀକୂଳ ସଭ୍ୟତା ]

ବାସ କରୁଥିଲେ । ମାତ୍ର ସେମାନେ ଇଟା ଓ ପଥର ଦ୍ୱାରା ସୁନ୍ଦର ଘର ଓ ଦୁର୍ଗ ନିର୍ମାଣ କରି ସେଥିରେ ନିରାପଦରେ ରହିଲେ । ଏହାଦ୍ୱାରା ସେତେବେଳେ ଶିଳ୍ପ ଓ ସ୍ଥାପତ୍ୟର ଉନ୍ନତି ସାଧିତ ହେଲା । ଲୋକମାନେ ସୁନା, ରୁପା, ତମ୍ବା ଓ କଂସା ପ୍ରଭୃତି ଧାତୁର ବ୍ୟବହାର ମଧ୍ୟ ଜାଣିଲେ । ତେଣୁ ସେମାନେ ପଥରର ଅସ୍ତ୍ରଶସ୍ତ୍ର ଓ ମାଟିପାତ୍ର ବଦଳରେ ତମ୍ବା ଓ କଂସାରେ ନିର୍ମିତ ଅସ୍ତ୍ରଶସ୍ତ୍ର, ବାସନ ଓ ଅନ୍ୟାନ୍ୟ ଆବଶ୍ୟକ ଜିନିଷ ତିଆରି କଲେ । ସୁନା, ରୁପା, ବହୁମୂଲ୍ୟ କାଚ ପଥରରେ

ଅଳଙ୍କାର ଗଢ଼ି ସ୍ତ୍ରୀ ଓ ପୁରୁଷ ଉଭୟେ ସେଗୁଡ଼ିକୁ ପରିଧାନକରି ଅଙ୍ଗଶୋଭା ବର୍ଦ୍ଧନ କଲେ । ସେମାନେ ନାନାପ୍ରକାର ପୋଷାକ ପରିଚ୍ଛଦ ତିଆରିକରି ଶିଖିଲେ । ସ୍ଥାୟୀ ବସତି ପରେ ମନୁଷ୍ୟର ଭାଷାର ବିକାଶ ଘଟିଲା । ସେତେବେଳେ ବିଭିନ୍ନ ଛବି ଦ୍ୱାରା ଭାବ ପ୍ରକାଶ କରାଯାଉଥିଲା । ମିଶର ଦେଶରେ ପ୍ରଥମେ **ଛବିଲିପି** ଦ୍ୱାରା ଭାବ ବିନିମୟର ଚେଷ୍ଟା କରାଯାଇଥିଲା ।



[ ଛବିଲିପି ]

ପରେ ବେବିଲୋନ ପ୍ରଭୃତି କେତେକ ଅଞ୍ଚଳରେ ଲୋକେ **ସଙ୍କେତ** ସାହାଯ୍ୟରେ ଲେଖିବାକୁ ଆରମ୍ଭ କଲେ । ସେମାନେ ମାଟିର ଟାଇଲ ଓ ଇଟା ପ୍ରସ୍ତୁତ କରି କଞ୍ଚା ଥିଲାବେଳେ ସେଗୁଡ଼ିକ ଉପରେ କାଠି ସାହାଯ୍ୟରେ କଲାପରି ସଙ୍କେତମାନ

[ କଲାଲିପି ]

ଲେଖି ଭାବପ୍ରକାଶ କରୁଥିଲେ । ସେହି ଟାଇଲ ଓ ଇଟାଗୁଡ଼ିକ ଶୁଖାଇ ଯତ୍ନରେ ରଖୁଥିଲେ । ଲିପି ଉଦ୍ଭାବନରେ ଓ ଲେଖାପଢ଼ା ଦିଗରେ ସ୍ଥାୟୀ ଅଧିବାସୀଙ୍କର ମାନବ ସଭ୍ୟତାକୁ ଦାନ ଅମୂଲ୍ୟ ଅଟେ । ବିଶେଷଜ୍ଞମାନେ ମାଟିତଳୁ ପାଇଥିବା ଚିହ୍ନଗୁଡ଼ିକ ପରୀକ୍ଷା କରି ମତ ଦିଅନ୍ତି ଯେ, ଏପରି ସଭ୍ୟତା ପ୍ରାୟ ସାତ ଆଠ ହଜାର ବର୍ଷ ପୂର୍ବେ ବିକାଶ ଲାଭ କରିଥିଲା ।

ପୃଥିବୀର ସମସ୍ତ ଲୋକ ସ୍ଥାୟୀ ଭାବରେ ବସତିସ୍ଥାପନ କରି ଜୀବନଯାପନ କରିବାର ସୁଯୋଗ ପାଇ ନ ଥିଲେ । ଯେଉଁମାନେ ଉର୍ବର କୃଷିକ୍ଷେତ୍ର ପାଇଲେ ନାହିଁ ସେମାନେ ଏଣେ ତେଣେ ବୁଲି ଖାଦ୍ୟ ସଂଗ୍ରହ କରିବାକୁ ବାଧ୍ୟ ହେଲେ । ସେତେବେଳେ ପୃଥିବୀର ଅଧିକାଂଶ ଅଞ୍ଚଳ ଘଞ୍ଚ ଜଙ୍ଗଲରେ ପୂର୍ଣ୍ଣ ଥିଲା ଓ କେତେକ ଅଞ୍ଚଳ ଶୁଷ୍କ ଏବଂ ଅନୁର୍ବର ଥିଲା । ସେହିସବୁ ଅଞ୍ଚଳରେ ମନୁଷ୍ୟମାନେ ନିଜ ନିଜର ପରିବାର, ଗୋରୁ, ମେଣ୍ଢା ପ୍ରଭୃତି ପଶୁ ଏବଂ ଅନ୍ୟାନ୍ୟ ଜିନିଷପତ୍ର ଧରି ବିଭିନ୍ନ ସ୍ଥାନକୁ ଯାଉଥିଲେ । ତେଣୁ ସେମାନଙ୍କୁ **ଯାଯାବର** ବା **ବାରବୁଲା** ବୋଲି କୁହାଯାଏ ।

ଯାଯାବରମାନେ ସ୍ଥାୟୀବାସିନ୍ଦାଙ୍କ ଅପେକ୍ଷା ଅଧିକ କଠୋର ଜୀବନଯାପନ କରୁଥିବାରୁ ଅଧିକ ବଳଶାଳୀ ଓ ସାହସୀ ଥିଲେ । ସେମାନେ ସମୟ ସମୟରେ ସ୍ଥାୟୀ ବାସିନ୍ଦାଙ୍କୁ ଆକ୍ରମଣ କରି ସେମାନଙ୍କର ଖାଦ୍ୟଶସ୍ୟ ଓ ଧନ ସମ୍ପଦ ଲୁଟି ନେଉଥିଲେ । ସ୍ଥାୟୀ ଅଧିବାସୀମାନେ ଯାଯାବରମାନଙ୍କ ଆକ୍ରମଣରୁ ରକ୍ଷା ପାଇବାପାଇଁ ରାଜା ଓ ସେନାପତିଙ୍କ ଅଧୀନରେ ରହୁଥିଲେ । ରାଜାମାନେ ସୁଦୃଢ଼ ଦୁର୍ଗ ଓ ନଗର ନିର୍ମାଣ କରି ସୈନ୍ୟସାମନ୍ତ ରଖି ଯାଯାବରମାନଙ୍କ ଆକ୍ରମଣର ପ୍ରତିରୋଧ କରୁଥିଲେ । ଯାଯାବରମାନେ ପ୍ରଧାନତଃ ପଶୁମାନଙ୍କ ମାଂସ ଖାଇ ଓ ଦୁଗ୍ଧପାନ କରି ଜୀବନଧାରଣ କରୁଥିଲେ । ସେମାନେ ପଶୁ ଚମଡ଼ାକୁ ବସ୍ତ୍ରରୂପେ ବ୍ୟବହାର କରୁଥିଲେ ଏବଂ ସେଥିରେ ତମ୍ବୁ ନିର୍ମାଣକରି ବାସ କରୁଥିଲେ । ସେମାନେ ସ୍ଥାୟୀ ବାସିନ୍ଦାଙ୍କପରି ଉନ୍ନତ ନ ଥିଲେ ମଧ୍ୟ ସେମାନଙ୍କ ସଭ୍ୟତା ଏକ ସ୍ୱତନ୍ତ୍ର ପ୍ରକାର ଥିଲା । ସେମାନଙ୍କ ମଧ୍ୟରେ ଏକତା ଓ

ନିୟମାନୁବର୍ତ୍ତିତା ବିଶେଷଭାବରେ ଥିଲା । ସେମାନେ ଲୁହାର ବ୍ୟବହାର ଜାଣିଥିଲେ ଏବଂ ଘୋଡ଼ା ଚଢ଼ି ଲୁହାର ଅସ୍ତ୍ର-ଶସ୍ତ୍ର ଧରି ଯୁଦ୍ଧ କରୁଥିଲେ । ମୁକ୍ତ-ଆକାଶ ତଳେ ସର୍ବଦା ବିଚରଣ କରୁଥିବାରୁ ସେମାନେ ଗ୍ରହ-ନକ୍ଷତ୍ରମାନଙ୍କ ଗତିବିଧି ଲକ୍ଷ୍ୟ କରୁଥିଲେ । ସେମାନଙ୍କର ନାନାଜାତୀୟ ଉଦ୍ଭିଦ ଓ ଧାତୁ ପଦାର୍ଥ ସମ୍ପର୍କରେ ଉତ୍ତମ ଧାରଣା ଥିଲା । ତେଣୁ ସେମାନଙ୍କ ମଧ୍ୟରେ ଦକ୍ଷ ଚିକିତ୍ସକ ଦେଖାଯାଉଥିଲେ । କେତେକ ଯାଯାବର ସୁନ୍ଦର ସଙ୍ଗୀତ ରଚନାକରି ବୀଣା ବାଦ୍ୟଯନ୍ତ୍ରରେ ଗାନ କରୁଥିଲେ । ସେମାନେ ଦଳପତିଙ୍କୁ ମାନୁଥିଲେ ଓ ସମ୍ମାନ ଦେଖାଉଥିଲେ; ମାତ୍ର ସେମାନଙ୍କ ମଧ୍ୟରେ ସାମାଜିକ ବନ୍ଧନ ଦୃଢ଼ ନ ଥିଲା ।

ସେକାଳର ଯାଯାବର ଜାତିର ଲୋକଙ୍କ ମଧ୍ୟରେ ତିନୋଟି ଜାତି ପ୍ରଧାନ ଥିଲେ । ସେମାନଙ୍କ ମଧ୍ୟରୁ **ନର୍ଡିକ** ଜାତିର ଲୋକ ପୂର୍ବ ୟୁରୋପ ଓ ପଶ୍ଚିମ ଏସିଆର ଜଙ୍ଗଲରେ ଦଳ ଦଳ ହୋଇ ବୁଲୁଥିଲେ । ସେମାନେ ଶ୍ୱେତକାୟ ଓ ବଳିଷ୍ଠ ଥିଲେ । ସେମାନେ **ଆଦିମ ଆର୍ଯ୍ୟ** ଜାତିର ଅନ୍ତର୍ଭୁକ୍ତ । ଏସିଆ ମହାଦେଶର ମଧ୍ୟଭାଗସ୍ଥ ବିସ୍ତୀର୍ଣ୍ଣ ତୃଣଭୂମି ଅଞ୍ଚଳରେ ଅନ୍ୟ ଏକ ପୀତକାୟ ଓ ସାହସୀ ଯାଯାବର ଜାତିର ଲୋକେ ବୁଲୁଥିଲେ । ସେମାନଙ୍କୁ **ମଙ୍ଗୋଲ** କୁହାଯାଏ । ଆଧୁନିକ ଚୀନ୍, କୋରିଆ ଓ ମଙ୍ଗୋଲିଆରେ ସେମାନଙ୍କ ବଂଶଧର ବାସ କରନ୍ତି । ଆରବର ମରୁଭୂମିରେ କଳା ବା ବାଦାମୀ ବର୍ଣ୍ଣର ଅନ୍ୟ ଏକ କଷ୍ଟସହିଷ୍ଣୁ ଯାଯାବର ଜାତିର ଲୋକ ବାସ କରୁଥିଲେ । ସେମାନେ **ସେମିଟିକ୍** ଜାତିର ଅନ୍ତର୍ଗତ । ଆଧୁନିକ ଆରବର ଲୋକେ ସେମାନଙ୍କ ବଂଶଧର ବୋଲି କୁହାଯାଏ ।

———

## ଚତୁର୍ଥ ଅଧ୍ୟାୟ

## ସିନ୍ଧୁ ସଭ୍ୟତା—ମହେନ୍-ଜୋ-ଦାରୋ ଓ ହରପ୍ପା

ସିନ୍ଧୁନଦୀ ଆଜକାଲି ପଶ୍ଚିମ ପାକିସ୍ଥାନ ମଧ୍ୟଦେଇ ପ୍ରବାହିତ ହେଉଅଛି । ଆଜକୁ ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବେ ସିନ୍ଧୁ ଉପତ୍ୟକାରେ ଏକ ନୂତନ ସଭ୍ୟତା ବିକାଶ ଲାଭ-କରିଥିଲା । ସେଠାରେ ଲୋକେ ବଡ଼ ବଡ଼ ନଗର ଗଢ଼ି ସୁଖରେ ବାସ କରୁଥିଲେ । ସିନ୍ଧୁ, ପଞ୍ଜାବ ଓ ବେଲୁଚିସ୍ଥାନର ବିସ୍ତୀର୍ଣ୍ଣ ଅଞ୍ଚଳର ଅଧିବାସୀମାନେ ଅନେକ ସହର ସ୍ଥାପନ କରିଥିଲେ ଏବଂ ସେଠାରେ ଉନ୍ନତ ନାଗରିକ ଜୀବନ ଯାପନ-କରୁଥିଲେ । ତେଣୁ ସିନ୍ଧୁ ସଭ୍ୟତାକୁ ପ୍ରଧାନତଃ **ନାଗରିକ ସଭ୍ୟତା** ବୋଲି କୁହାଯାଏ । ୧୯୨୧—୨୨ ଖ୍ରୀଷ୍ଟାବ୍ଦରେ ସିନ୍ଧୁ ନଦୀକୂଳରେ ଥିବା **ମହେନ୍ ଜୋ-ଦାରୋ** ଓ ଝେଲମ ନଦୀକୂଳରେ ଥିବା **ହରପ୍ପା** ନାମକ ଦୁଇଟି ସ୍ଥାନରେ ପ୍ରାଚୀନ ସହରର ଧ୍ୱଂସାବଶେଷ ଆବିଷ୍କୃତ ହୋଇଅଛି । ଏହି ଦୁଇଟି ସହର ପରସ୍ପରଠାରୁ ପ୍ରାୟ ୬୪୦ କିଲୋମିଟର ଦୂରରେ ଅବସ୍ଥିତ ଥିଲେ ମଧ୍ୟ ସେଗୁଡ଼ିକର ଗଠନ ପ୍ରଣାଳୀ ପ୍ରାୟ ଏକ ପ୍ରକାରର ଅଟେ । ଏବେ ଅହମ୍ମଦାବାଦ୍ ନିକଟରେ **ଲୋଥାଲ** ନାମକ ସ୍ଥାନରେ ମାଟିତଳୁ ହରପ୍ପା ଓ ମହେନ୍-ଜୋ-ଦାରୋ ଧ୍ୱଂସାବଶେଷର କେତେକ ନିଦର୍ଶନ ବାହାରିଛି । ଏଥିରୁ ମହେନ୍-ଜୋ-ଦାରୋ ଓ ହରପ୍ପା ସହର ଦୁଇଟି ଏକ ସମୟରେ ନିର୍ମିତ ହୋଇଥିଲା ଓ ଏକ ରାଜ୍ୟ ଅନ୍ତର୍ଗତ ଥିଲା ବୋଲି ଅନୁମାନ

କରାଯାଇପାରେ । ଏହି ଦୁଇ ସହରରୁ ମିଳିଥିବା ନରକଙ୍କାଳ-ଗୁଡ଼ିକ ପରୀକ୍ଷାକରି ବିଶେଷଜ୍ଞମାନେ ଜାଣି ପାରିଛନ୍ତି ଯେ ସେହି ମନୁଷ୍ୟମାନଙ୍କର ସୁମେରୀୟ ଲୋକମାନଙ୍କ ସହିତ ସାମଞ୍ଜସ୍ୟ ଥିଲା । ତେଣୁ ସିନ୍ଧୁ ଉପତ୍ୟକାରେ ବାସକରୁଥିବା ଲୋକମାନେ ସୁମେରୀୟ ଜାତିର ଏକ ଶାଖା ବୋଲି ବିଶେଷଜ୍ଞମାନଙ୍କର ମତ । ଅନେକଙ୍କ ମତରେ ସିନ୍ଧୁ ଉପତ୍ୟକାରେ ଏପରି ସଭ୍ୟତା ଗଢିଥିବା ଲୋକମାନେ ହେଉଛନ୍ତି ଦ୍ରାବିଡ଼ । ତେଣୁ ସିନ୍ଧୁ ସଭ୍ୟତାକୁ **ଦ୍ରାବିଡ଼ ସଭ୍ୟତା** ବୋଲି କେତେକ କହନ୍ତି ।

**ମହେନ୍‌-ଜୋ-ଦାରୋ ଓ ହରପପା** – ଏହି ଦୁଇଟି ସହରର ଧ୍ୱଂସାବଶେଷରୁ ଜଣାଯାଏ ଯେ ସେଠାରେ ଗ୍ଲୋଟ ଗ୍ଲୋଟ ଘରଠାରୁ ଆରମ୍ଭକରି ବଡ଼ ବଡ଼ କୋଠାଘରମାନ ଥିଲା । ସେଗୁଡ଼ିକ ପୋଡ଼ାଇଟା ବା ପ୍ରସ୍ତର ଦ୍ୱାରା ନିର୍ମିତ ହୋଇଥିଲା । ଘରଗୁଡ଼ିକରେ ଦୁଆର, ଝରକା, ଅଗଣା, କୂଅ, ପାଣିନଳା ଓ ଗାଧୁଆଘର ଥିଲା । ନଗରର ରାସ୍ତାମାନ ସିଧାସଳଖ ଓ ପ୍ରଶସ୍ତ ଥିଲା । ରାସ୍ତାର ଦୁଇପାଖରେ ଧାଡ଼ିହୋଇ ସୁନ୍ଦର ସୁନ୍ଦର କୋଠାଘରମାନ ତିଆରି ହୋଇଥିଲା । ରାସ୍ତାଧାରରେ ପୟଃ-ପ୍ରଣାଳୀମାନ ରହିଥିଲା । ସହର ମଧ୍ୟରେ ସର୍ବସାଧାରଣଙ୍କ ନିମନ୍ତେ ପ୍ରାଚୀର ବେଷ୍ଟିତ ବୃହତ୍ ସ୍ନାନାଗାର ଥିଲା । ମହେନ୍‌-ଜୋ-ଦାରୋ ସହର ମଧ୍ୟରେ ଏପରି ଏକ ବୃହତ୍ ସ୍ନାନାଗାର ଦେଖାଯାଏ । ଏହାଛଡ଼ା ସହରର କେନ୍ଦ୍ରସ୍ଥାନ-ମାନଙ୍କରେ ବଡ଼ ବଡ଼ ପ୍ରସାଦ ଥିଲା । ସହର ମଧ୍ୟରେ ନୃତ୍ୟଶାଳା, ବ୍ୟାୟାମଶାଳା ଓ ଉଦ୍ୟାନମାନ ଥିଲା । ଏଥିରୁ ସେମାନଙ୍କର ଉନ୍ନତ ରୁଚି ଓ ଜୀବନଯାପନ ପ୍ରଣାଳୀର ପ୍ରମାଣ ମିଳେ ।



[ ମହେନ୍-ଜୋ-ଦାରୋର ସ୍ନାନାଗାର ]

ସିନ୍ଧୁ ଉପତ୍ୟକାର ଅଧିବାସୀମାନେ କୃଷିଜୀବୀ ଥିଲେ । ସେମାନେ ଗହମ, ଯବ, ବାର୍ଲି ପ୍ରଭୃତି ଶସ୍ୟ ଉତ୍ପନ୍ନ କରୁଥିଲେ । ଗହମ, ବାର୍ଲି ଇତ୍ୟାଦି ଶସ୍ୟ, ନାନା ପ୍ରକାର ଫଳ, ମେଣ୍ଢା ଓ ଘୁଷୁରିର ମାଂସ, ମାଛ ଓ ଅଣ୍ଡା ଖାଦ୍ୟରୂପେ ବ୍ୟବହୃତ ହେଉଥିଲା । ସେମାନେ ଗୋରୁ, ମଇଁଷି, ମେଣ୍ଢା, ଘୁଷୁରି ଓ କୁକୁର ପ୍ରଭୃତି ପଶୁପାଳନ କରୁଥିଲେ । ଲୋକେ ତୁଳା ଓ ପଶମ ନିର୍ମିତ ପୋଷାକ ପରିଧାନ କରୁଥିଲେ ।

ସେତେବେଳେ ସମାଜରେ ସ୍ତ୍ରୀ ଲୋକ ଉଚ୍ଚ ସମ୍ମାନ ଲାଭ କରୁଥିଲେ । ବାଳିକାମାନେ ନୃତ୍ୟ ଓ ସଙ୍ଗୀତ ନିପୁଣା ଥିଲେ । ନୃତ୍ୟରତା ଏକ ବାଳିକାର ପ୍ରସ୍ତରମୂର୍ତ୍ତି ମାଟିତଳୁ ମିଳିଅଛି ଓ ତାହାର ନୃତ୍ୟଭଙ୍ଗୀରେ ଉନ୍ନତ ରୁଚି ପ୍ରକାଶ ପାଉଛି ।

ଶ୍ରେଷ୍ଠ ପିଲାମାନଙ୍କର ଅନେକ ପ୍ରକାର ଖେଳନା ମିଳୁଛି । ସେଥିରୁ ଜଣାଯାଏ ଯେ ସେତେବେଳେ ଲୋକେ ଶିଶୁ ଶିକ୍ଷାପ୍ରତି ଓ ଶିଶୁମାନଙ୍କ ଆମୋଦ ପ୍ରମୋଦ ପ୍ରତି ବେଶୀ ନଜର ଦେଉଥିଲେ ।



[ କାରିଗରୀ ମୂର୍ତ୍ତି ଓ ପାତ୍ର ]

ସେ ଯୁଗରେ ଶିଳ୍ପର ଯଥେଷ୍ଟ ଉନ୍ନତି ଘଟିଥିଲା । ଲୋକମାନେ ସୁନ୍ଦର ସୁନ୍ଦର ମାଟିପାତ୍ର ଓ ନାନାପ୍ରକାର ମୂର୍ତ୍ତି ଗଠନ କରୁଥିଲେ । ମାଟି ପାତ୍ରଗୁଡ଼ିକରେ ଜୀବ-ଜନ୍ତୁର ଛବି ଓ ନାନାପ୍ରକାର ଚିତ୍ର ଅଙ୍କନ କରୁଥିଲେ । ସେମାନେ ସୁନା, ରୁପା, ତମ୍ବା ଓ ବ୍ରୋଞ୍ଜରେ ବ୍ୟବହାର ଉପଯୋଗୀ ଜିନିଷ ଏବଂ ଅଳଙ୍କାର ତିଆରି କରୁଥିଲେ । ସ୍ୱର୍ଣ୍ଣ ନିର୍ମିତ ଅଳଙ୍କାରଗୁଡ଼ିକ ନାନା କାରୁକାର୍ଯ୍ୟରେ ଅତି ସୁନ୍ଦର ଦିଶୁଥିଲା । ସ୍ତ୍ରୀମାନେ କାନଫୁଲ ଓ ଅଣ୍ଟାସୂତା ପ୍ରଭୃତି ଅଳଙ୍କାର ବ୍ୟବହାର କରୁଥିଲେ ଏବଂ ଖଡ଼ୁ, ଅଳକା ଓ ହାର ପ୍ରଭୃତି ଅଳଙ୍କାର ସ୍ତ୍ରୀ ଓ ପୁରୁଷ ଉଭୟେ ବ୍ୟବହାର କରୁଥିଲେ । ସେମାନଙ୍କ ନିତ୍ୟ ବ୍ୟବହାର୍ଯ୍ୟ

ଜିନିଷ ମଧ୍ୟରେ ମାଟି ଓ ଚିନାମାଟିର ପାତ୍ର, କୁରାଢ଼ି, ଛୁରୀ, ଖୁର, ଛୁଞ୍ଚ ପ୍ରଭୃତି ଅନେକ ଜିନିଷ ଓ ନାନାପ୍ରକାର ହାତ-ହତିଆର ଥିବାର ପ୍ରମାଣ ମିଳେ । ହାତ ହତିଆର ମଧ୍ୟରେ ଧନୁଶର, ଏବଂ କଂସା ଓ ତମ୍ବାର ବର୍ଚ୍ଛା, ଫାର୍ଶା ପ୍ରଭୃତି ପ୍ରଧାନ । ବିଭିନ୍ନ ଧାତୁ ନିର୍ମିତ ଅନେକ ଜିନିଷ ମିଳିଥିଲେ ମଧ୍ୟ ଲୁହାରେ ତିଆରି କୌଣସି ଜିନିଷ ମିଳିନାହିଁ । ଖୁବ୍ ସମ୍ଭବତଃ ସେମାନେ ଲୁହାର ବ୍ୟବହାର ଜାଣି ନ ଥିଲେ । ମହେନ୍-ଜୋ-ଦାରୋରୁ ମିଳିଥିବା ପଥରର ସିଲ୍ ଓ ମୋହରମାନଙ୍କରେ ଯେଉଁ ଛବି ଅଙ୍କିତ ହୋଇଅଛି, ସେଥିରୁ ସେମାନଙ୍କ ଉନ୍ନତ ଶିଳ୍ପ-କଳାର ପ୍ରମାଣ ମିଳେ । ବସ୍ତ୍ର ବୟନ, ପାତ୍ର ଗଠନ, ଧାତୁ ଦ୍ରବ୍ୟର ମିଶ୍ରଣ ଏବଂ ପଥରର ମୂର୍ତ୍ତି ନିର୍ମାଣ ସେମାନଙ୍କୁ ଭଲଭାବରେ ଜଣାଥିଲା ।

ସିନ୍ଧୁ ସଭ୍ୟତାରେ ମାତୃ ଦେବତା ପୂଜା ପ୍ରଚଳିତ ଥିଲା । ଶିବଙ୍କ ଭଳି ଏକ ମୂର୍ତ୍ତି ପୂଜା ହେଉଥିବା ଜଣାପଡେ । ଏହାଛଡ଼ା ସେମାନେ ଷଣ୍ଢ, ହସ୍ତୀ ପ୍ରଭୃତି ପଶୁ ଓ ବଟ, ଅଶ୍ୱତ୍ଥ ପ୍ରଭୃତି ବୃକ୍ଷ ପୂଜା କରୁଥିଲେ । ସେମାନେ ଭୂତ ପ୍ରେତଙ୍କୁ ମଧ୍ୟ ବିଶ୍ୱାସ କରୁଥିଲେ । ତେଣୁ ହିନ୍ଦୁଧର୍ମର ଅନେକ ମତ ଓ ଧର୍ମବିଶ୍ୱାସ ସିନ୍ଧୁ ଉପତ୍ୟକା ସଭ୍ୟତାରେ ଦେଖାଯାଉଥିଲା ।

ସିନ୍ଧୁ ଉପତ୍ୟକାର ଅଧିବାସୀମାନେ ଖୁବ୍ ଶାନ୍ତିପ୍ରିୟ ଓ ଧର୍ମପ୍ରାଣ ଥିଲେ । ଯୁଦ୍ଧବିଦ୍ୟାରେ ସେମାନେ ଖୁବ୍ ପାରଙ୍ଗମ ଥିଲେ ବୋଲି ମନେହୁଏ ନାହିଁ । କାରଣ ମାଟିତଳୁ ଯେଉଁ ଖଣ୍ଡା ଓ ଢାଲ ମିଳିଛି, ତାହା ଆର୍ଯ୍ୟମାନଙ୍କ ଖଣ୍ଡା ଓ ଢାଲ ତୁଳନାରେ ଅତି ନିକୃଷ୍ଟ । ସିନ୍ଧୁ-ଉପତ୍ୟକାର ଅଧିବାସୀମାନଙ୍କ କୃଷି, ଶିଳ୍ପ, ଧର୍ମ ଓ ଉନ୍ନତ ଜୀବନଯାପନ ପ୍ରଣାଳୀରୁ ସିନ୍ଧୁ-ସଭ୍ୟତା

କପର ଉଚ୍ଚକୋଟୀର ଥିଲ ତାହା ସହଜରେ ଅନୁମେୟ । ପରବର୍ତ୍ତୀକାଳରେ ଯାଯାବର ଓ ଯୁଦ୍ଧପଟୁ ଆର୍ଯ୍ୟମାନେ ସେମାନଙ୍କୁ ଆକ୍ରମଣକରି ସହଜରେ ପରାସ୍ତ କରିଥିଲେ । ଏହା ଫଳରେ ସିନ୍ଧୁ-ସଭ୍ୟତାର ଅବସାନ ଘଟିଥିଲା ।

---

## ପଞ୍ଚମ ଅଧ୍ୟାୟ

### ଆଦିମ ଆର୍ଯ୍ୟ

ଆଜକୁ ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବେ ସିନ୍ଧୁନଦୀ ଅବବାହିକାରେ ଯେତେବେଳେ ଅଧିବାସୀମାନେ ସ୍ଥାୟୀ ଭାବରେ ବାସବାସକରି ଉନ୍ନତ ସଭ୍ୟତା ଗଠନ କରୁଥିଲେ, ସେତେବେଳେ ୟୁରୋପ ଓ ପଶ୍ଚିମ ଏସିଆର ବିସ୍ତୃତ ଅଞ୍ଚଳ ବିଶେଷତଃ କାସ୍ପିୟାନ ହ୍ରଦର ଚତୁର୍ଦ୍ଦିଗରେ ଏକ ଯାଯାବର ଜାତିର ଲୋକ ରହୁଥିଲେ । ସେମାନଙ୍କୁ **ଆଦିମ ଆର୍ଯ୍ୟ** ବୋଲାଯାଏ ।

ସେମାନେ ଦୀର୍ଘକାୟ, ଗୌରବର୍ଣ୍ଣ ଓ ବଳବାନ ଥିଲେ । ସେମାନଙ୍କ ବୁଦ୍ଧି ତୀକ୍ଷ୍ଣ ଓ ସ୍ମୃତିଶକ୍ତି ପ୍ରଖର ଥିଲା ।

ଗୋରୁ, ମେଣ୍ଢା ପ୍ରଭୃତି ପଶୁ ସେମାନଙ୍କର ପ୍ରଧାନ ସମ୍ବଳ ଥିଲା । ତେଣୁ ସେମାନେ ଚାରଣଭୂମିର ସନ୍ଧାନରେ ଦଳ ଦଳ ହୋଇ ଏକ ସ୍ଥାନରୁ ଅନ୍ୟସ୍ଥାନକୁ ଚାଲି ଯାଉଥିଲେ । ସେତେବେଳେ ସେମାନେ ଜିନିଷପତ୍ର ଓ ଖାଦ୍ୟ ଦ୍ରବ୍ୟ ଇତ୍ୟାଦି ବଳଦ ଗାଡ଼ିରେ ଲଦି ନେଇ ଯାଉଥିଲେ । କାଳକ୍ରମେ ସେମାନେ

ଘୋଡ଼ାର ବ୍ୟବହାର ଜାଣିଲେ । ଘୋଡ଼ାକୁ ସେମାନେ ଗାଡ଼ି-ଟାଣିବାରେ ଓ ଯୁଦ୍ଧ କରିବାରେ ବ୍ୟବହାର କଲେ । ସେମାନେ ପ୍ରଥମେ ବ୍ରୋଞ୍ଜ ଧାତୁ ବ୍ୟବହାର କରୁଥିଲେ; ମାତ୍ର ପରେ ଲୁହାର ବ୍ୟବହାର ଜାଣିଲେ । ଖ୍ରୀଷ୍ଟପୂର୍ବ ୧୫୦୦ ଅବ୍ଦ ବେଳକୁ ସେମାନେ ଲୁହାକୁ ତରଳାଇ ସେଥିରୁ ନାନାପ୍ରକାର ବ୍ୟବହାର୍ଯ୍ୟ ଜିନିଷ ତିଆରି କଲେ । ଖୁବ୍ ସମ୍ଭବତଃ ଏହି ଆର୍ଯ୍ୟମାନେ ଲୁହା ପଥର ତରଳାଇ ଲୁହା ବାହାର କରିବା ଉପାୟ ପ୍ରଥମେ ଉଦ୍ଭାବନ କରିଥିଲେ ।

ଆଦିମ ଆର୍ଯ୍ୟମାନେ ମୃତବ୍ୟକ୍ତିର ଶବଦାହ କରୁଥିଲେ । ଶବଦାହ ପରେ ଚିତାଭସ୍ମକୁ ଗୋଟିଏ ମାଷରେ ରଖି ମାଟିତଳେ ପୋତି ଦେଉଥିଲେ ଓ ତାହା ଉପରେ ସମାଧି ନିର୍ମାଣ କରୁଥିଲେ । ସେମାନଙ୍କ ମଧ୍ୟରେ ପ୍ରତି ଦଳରେ ଜଣେ ଦଳପତି ଥିଲେ । ଦଳପତିଙ୍କର ଅଖଣ୍ଡ କ୍ଷମତା ଓ ପ୍ରଭାବ ଥିଲା । ଶତ୍ରୁ ସହିତ ଯୁଦ୍ଧ କଲାବେଳେ ଦଳପତି ଦଳର ସେନାପତି ଓ ପରିଚାଳକ ଥିଲେ । ପ୍ରତି ଦଳରେ କେତେକ ଭାଟ ରହୁଥିଲେ । ଦଳର ସମସ୍ତ ଲୋକେ ସମବେତ ହେଉଥିବା ଗୃହକୁ ସଂଘାଗାର କୁହାଯାଉଥିଲା । ସେଠାରେ ସମସ୍ତ ଲୋକେ ଏକତ୍ର ହୋଇ ଦଳପତିଙ୍କ ବକ୍ତବ୍ୟ ଓ ଜାତୀୟ କବିମାନଙ୍କ ରଚିତ ସଙ୍ଗୀତ ଶୁଣୁଥିଲେ । ଭାଟମାନେ ଦଳପତିଙ୍କର ଓ ଅନ୍ୟାନ୍ୟ ବୀରମାନଙ୍କର ବୀରତ୍ୱକାହାଣୀ ବୀଣା ସାହାଯ୍ୟରେ ଗାନକରି ସମସ୍ତଙ୍କୁ ମୁଗ୍ଧ କରୁଥିଲେ ଏବଂ ସମସ୍ତଙ୍କ ମନରେ ଦମ୍ଭ, ସାହସ ଓ ଜାତୀୟତାଭାବ ବୃଦ୍ଧି କରାଉଥିଲେ । ସେଠାରେ ଦଳର ନୀତି ଓ କାର୍ଯ୍ୟପନ୍ଥା ବିଚାର କରି ସ୍ଥିର କରାଯାଉଥିଲା ।

ସେମାନେ ଶିକାର, ଯୁଦ୍ଧ, ନୃତ୍ୟ, ସଙ୍ଗୀତ ଇତ୍ୟାଦିରେ ଭାଗନେଇ ଆନନ୍ଦ ଅନୁଭବ କରୁଥିଲେ । ସମୟ ସମୟରେ ସେମାନେ ବଡ଼ ବଡ଼ ଭୋଜ କରୁଥିଲେ । ଆମୋଦ ପ୍ରମୋଦ ସମୟରେ ସେମାନେ ମାଦକଦ୍ରବ୍ୟ ବ୍ୟବହାର କରୁଥିଲେ ।

ସେମାନଙ୍କର ଅନ୍ୟ ଜାତିମାନଙ୍କ ସହିତ ବାରମ୍ବାର ଯୁଦ୍ଧ ଲାଗୁଥିବାରୁ କ୍ରମେ ଦଳପତିଙ୍କର କ୍ଷମତା ବଢ଼ିବାକୁ ଲାଗିଲା । ଆର୍ଯ୍ୟ ପରିବାରରେ ଗୃହସ୍ୱାମୀ ପରିବାରର ମୁଖ୍ୟକର୍ତ୍ତା ଥିଲେ । ସମସ୍ତେ ତାଙ୍କ ଆଦେଶ ମାନିବାକୁ ବାଧ୍ୟ ଥିଲେ । ସେମାନଙ୍କର କଥିତ ଭାଷା ଥିଲେ ମଧ୍ୟ କୌଣସି ଲିପି ନ ଥିଲା । ମାତ୍ର ଜାତିସ୍ଥ କବିମାନେ ଯେଉଁ ସଙ୍ଗୀତ ଗାନ କରୁଥିଲେ, ଅନ୍ୟମାନେ ତାହାକୁ ଶୁଣି ଶୁଣି ଆବୃତ୍ତି କରୁଥିଲେ ଓ ମନେରଖି ପାରୁଥିଲେ । ଏହିପରି ପ୍ରଥମେ ସେମାନଙ୍କର କଥିତ ସାହିତ୍ୟ ସୃଷ୍ଟି ହୋଇଥିଲା । କଥିତ ସାହିତ୍ୟକୁ ବିଭିନ୍ନ ଦେଶରେ ସାଗ (Saga) ଓ ବେଦ ବା ଶ୍ରୁତି କୁହାଯାଉଥିଲା ।

କ୍ରମେ ସେହି ଆଦିମ ଆର୍ଯ୍ୟମାନଙ୍କର ସଂଖ୍ୟା ବଢ଼ିଲା । ସେମାନେ ସେମାନଙ୍କର ଆଦିମ ଭୂମି ଛାଡ଼ି ଚାରଣଭୂମି ଅନ୍ୱେଷଣରେ ବିଭିନ୍ନ ଅଞ୍ଚଳକୁ ଯିବାକୁ ବାଧ୍ୟ ହେଲେ । ସେମାନଙ୍କ ମଧ୍ୟରୁ ଦଳେ ୟୁରୋପର ଦକ୍ଷିଣ ପଶ୍ଚିମଆଡ଼େ ଯାଇ ବଲକାନ୍ ଉପଦ୍ୱୀପରେ ବସତିସ୍ଥାପନ କଲେ ଓ ସେମାନେ କାଳକ୍ରମେ ଗ୍ରୀକ୍ ଆର୍ଯ୍ୟ ନାମରେ ପରିଚିତ ହେଲେ । ଆଉ ଦଳେ ଇଟାଲିରେ ପ୍ରବେଶକରି ଲାଟିନ୍ ଆର୍ଯ୍ୟ ନାମରେ ଓ ଅନ୍ୟ କେତେକ ଦଳ ଇଂଲଣ୍ଡ, ଫ୍ରାନସ, ସ୍ପେନ୍ ପ୍ରଭୃତି ପଶ୍ଚିମ-ୟୁରୋପ ଅଞ୍ଚଳରେ ପ୍ରବେଶକରି ନର୍ଡିକ୍ ଓ କେଲ୍‌ଟ ନାମରେ ପରିଚିତ

ହେଲେ । ଆର୍ଯ୍ୟମାନଙ୍କର ଅନ୍ୟ ଏକ ଶାଖା ଦକ୍ଷିଣପୂର୍ବ ଦିଗରେ ଗତିକରି ପାରସ୍ୟରେ ବସତିସ୍ଥାପନ କଲେ ଓ ସେଥିରୁ




କେତେକ ଆର୍ଯ୍ୟ ହିନ୍ଦୁକୁଶ ପର୍ବତ ଅତିକ୍ରମକରି ଭାରତର ଉତ୍ତର ପଶ୍ଚିମ ଗିରିପଥ ଦେଇ ଭାରତର ସିନ୍ଧୁ-ଉପତ୍ୟକାରେ ପ୍ରବେଶ କଲେ । ସେମାନଙ୍କଦ୍ୱାରା ସିନ୍ଧୁ ଉପତ୍ୟକାରେ ବିକାଶଲାଭ କରିଥିବା ସଭ୍ୟତା ଧ୍ୱଂସ ହେଲା ଓ ସେଠାରେ ନୂତନ ସଭ୍ୟତାର ଉନ୍ମେଷ ହେଲା ।

## ପାରସିକ ଆର୍ଯ୍ୟ

ଆଧୁନିକ ଇରାନ୍ ମାଳଭୂମିର ଅନ୍ୟ ନାମ ପାରସ୍ୟ । ଆର୍ଯ୍ୟମାନଙ୍କର ଯେଉଁ ଶାଖା ପାରସ୍ୟ ଅଞ୍ଚଳକୁ ଆସିଲେ ସେମାନେ ପ୍ରଥମେ ପାରସ୍ୟର ଉତ୍ତର ପଶ୍ଚିମ ପାହାଡ଼ିଆ ଅଞ୍ଚଳରେ ବାସ କଲେ । ପରେ ସେମାନଙ୍କ ମଧ୍ୟରୁ ଦଳେ

ଦକ୍ଷିଣ ପୂର୍ବାଂଶକୁ ଯାଇ ସେଠାରେ ବସତି ସ୍ଥାପନ କଲେ । ଇରାନ୍ ମାଳଭୂମିର ଉତ୍ତର ପଶ୍ଚିମାଂଶରେ ବାସ କରୁଥିବା ଆର୍ଯ୍ୟମାନେ **ମେଡ଼ସ୍ ଆର୍ଯ୍ୟ** ଓ ଦକ୍ଷିଣ ପୂର୍ବାଂଶରେ ଥିବା ଆର୍ଯ୍ୟମାନେ **ପାରସିକ ଆର୍ଯ୍ୟ** ନାମରେ ପରିଚିତ ହେଲେ । ଖ୍ରୀଷ୍ଟଜନ୍ମର ପ୍ରାୟ ଦେଢ଼ହଜାର ବର୍ଷ ପୂର୍ବେ ଏହି ଆର୍ଯ୍ୟମାନେ ପାରସ୍ୟରେ ବସତି ସ୍ଥାପନ କରିଥିଲେ ।

**ଜୋରୋଷ୍ଟର**—ଖ୍ରୀଷ୍ଟଜନ୍ମର ପ୍ରାୟ ଏକହଜାର ବର୍ଷ ପୂର୍ବେ ପାରସିକ ଆର୍ଯ୍ୟମାନଙ୍କ ମଧ୍ୟରେ **ଜୋରୋଷ୍ଟର** ନାମକ ଜଣେ ମହାପୁରୁଷ ଜନ୍ମ ଗ୍ରହଣ କରିଥିଲେ । ସେ ମନୁଷ୍ୟର ସ୍ୱଭାବ ଓ ପ୍ରବୃତ୍ତିକୁ ଗଭୀର ଭାବରେ ଅନୁଶୀଳନ କରି ଏକ ନୂତନ ଧର୍ମମତ ପ୍ରଚାର କରିଥିଲେ । ସେ କହୁଥିଲେ, ପ୍ରତ୍ୟେକ ମନୁଷ୍ୟର ହୃଦୟ ମଧ୍ୟରେ ଏବଂ ମନୁଷ୍ୟ ସମାଜରେ ପାପ ଓ ପୁଣ୍ୟ, ସତ୍ ଓ ଅସତ୍ ଏହି ଦୁଇଟି ବିପରୀତ ଶକ୍ତିର ଯୁଦ୍ଧ ଚାଲିଛି । ଅସତ୍ ବା ପାପଶକ୍ତି ସତ୍ ଓ ପୁଣ୍ୟ ଶକ୍ତିକୁ ଧ୍ୱଂସ କରିବାକୁ ଚେଷ୍ଟା କରୁଛି । ତେଣୁ ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ ହେଉଛି ତାହାର ହୃଦୟରୁ ପାପଶକ୍ତିକୁ ସମୂଳେ ବିନାଶ କରିବା । ସେଥିପାଇଁ ମନୁଷ୍ୟକୁ ନିଜ ହୃଦୟରୁ ପାପଭାବ ଓ ଅସତ୍ ପ୍ରବୃତ୍ତିକୁ ଦୂର କରିବାକୁ ପଡ଼ିବ ଓ ସର୍ବଦା ମିଥ୍ୟାଠାରୁ ଦୂରରେ ରହି ସତ୍ୟ କହିବାକୁ ଅଭ୍ୟାସ କରିବାକୁ ପଡ଼ିବ । ସେ ସତ୍ୟ ଓ ଧର୍ମର ଶକ୍ତିକୁ **ଆହୁର୍** ବା **ଆହୋମଜ୍ଦା** ଏବଂ ଅସତ୍ ଓ ପାପଶକ୍ତିକୁ **ଅହ୍ରିମାନ** ବା **ଅନ୍ଧକାର** ଆଖ୍ୟା ଦେଇଥିଲେ । ସେ ପ୍ରଚାର କରିଥିଲେ ଯେ ଆହୁର୍ ଶାନ୍ତି ଓ ଆନନ୍ଦର ଦେବତା ଏବଂ ଅହ୍ରିମାନ୍ ପୃଥିବୀର ଅଶାନ୍ତି ଓ ଦୁଃଖର କାରଣ ।

ଆହୁର୍ ଆମେକର ଦେବତା । ଏହି ଶକ୍ତିକୁ ସେ ଅଗ୍ନେକ ବା ଅଗ୍ନିରୂପରେ ପୂଜା କରୁଥିଲେ । ତେଣୁ ପ୍ରାଚୀନ ପାରସ୍ୟବାସୀ ଅଗ୍ନିପୂଜକରୂପେ ପ୍ରସିଦ୍ଧି ଲାଭ କରିଥିଲେ । ଜୋରଷ୍ଟର ଅଗ୍ନିପୂଜା ନିମନ୍ତେ କୌଣସି ମୂର୍ତ୍ତି ବା ମନ୍ଦିର ବ୍ୟବସ୍ଥା କରି ନ ଥିଲେ; ଆହୁର୍ ପ୍ରତ୍ୟେକ ମନୁଷ୍ୟର ଅନ୍ତରରେ ଅଛନ୍ତି ବୋଲି କହୁଥିଲେ । ତେଣୁ ମାନବ ସମାଜର ପ୍ରତ୍ୟେକ ମନୁଷ୍ୟ ସତ ଓ ପୁଣ୍ୟକୁ ଅନ୍ତରରେ ଉପଲବ୍ଧି କରି ଅରିମାନ୍ ବିରୁଦ୍ଧରେ ଯୁଦ୍ଧକରିବା ଉଚିତ । ଏହାଦ୍ୱାରା ଅରିମାନ୍ ବା ପାପଶକ୍ତି ବିନଷ୍ଟ ହୋଇପାରିବ ଏବଂ ଶାନ୍ତି ଓ ଆନନ୍ଦ ପ୍ରତିଷ୍ଠିତ ହେବ ବୋଲି ସେ ବୁଝାଉଥିଲେ ।

ତାଙ୍କର ଏହିସବୁ ଧର୍ମମତ **'ଜେନ୍ଦାଭେସ୍ତା'** ଗ୍ରନ୍ଥରେ ଲିପିବଦ୍ଧ ହୋଇଅଛି । ଜେନ୍ଦାଭେସ୍ତା ଓ ଋକ୍‌ବେଦ ମଧ୍ୟରେ କେତେକ ସାମଞ୍ଜସ୍ୟ ଥିବାର ଦେଖାଯାଏ । ପାରସିକ ଆର୍ଯ୍ୟମାନେ ଜୋରୋଷ୍ଟରଙ୍କ ଧର୍ମମତ ଅନୁସରଣ କରି ଏକ ବଳିଷ୍ଠ ଓ ସାହସୀ ଜାତିରେ ପରିଣତ ହୋଇଥିଲେ ।

**ସାଇରସ**—ଖ୍ରୀଷ୍ଟପୂର୍ବ ୫୫୮ ଅବ୍ଦରେ **ସାଇରସ୍** (Cyurs) ନାମକ ଜଣେ ଦଳପତି ପାରସ୍ୟରେ ଏକ ସାମ୍ରାଜ୍ୟ ଗଠନ କରିଥିଲେ । ସେ ପ୍ରଥମେ ମେଡ଼ିସ ଆର୍ଯ୍ୟମାନଙ୍କୁ ପରାସ୍ତ କରି ସମଗ୍ର ଇରାନ୍ ମାଳଭୂମି ଅଧିକାର କଲେ । ଏହାପରେ ସେ ଏସିଆ ମାଇନରରେ ଥିବା ଧନଶାଳୀ **ଲିଡ଼ିଆ** ରାଜ୍ୟ ଆକ୍ରମଣ କଲେ । ଲିଡ଼ିଆର ରାଜା କ୍ରୋସସଙ୍କୁ ପରାସ୍ତ କରି ସେ ବହୁ ଧନରତ୍ନ ଲାଭ କରିଥିଲେ । ଖ୍ରୀଷ୍ଟପୂର୍ବ ୩୫୮ ଅବ୍ଦରେ ସେ ବେବିଲୋନ୍‌ର ରାଜା ନବୋନିଡ଼ାସଙ୍କୁ ପରାସ୍ତ କରିବାରୁ

ବେବିଲୋନିଆ ପାରସ୍ୟ ରାଜ୍ୟର ଅଧୀନ ହେଲା । ଏହିପରି ଭାବରେ **ସାଇରସ୍** ଏକ ବିଶାଳ ପାରସ୍ୟ ସାମ୍ରାଜ୍ୟ ଗଠନକରି ଖ୍ରୀଷ୍ଟପୂର୍ବ ୫୨୯ ଅବ୍ଦରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ପରେ ତାଙ୍କ ପୁତ୍ର **କାମ୍ବିସସ୍** ମିଶର ଜୟ କରି ନୀଳନଦୀ ଅବବାହିକାରେ ଆର୍ଯ୍ୟ ସଭ୍ୟତା ବିସ୍ତାର କରିଥିଲେ ।

**ପ୍ରଥମ ଡେରିୟସ**—କାମ୍ବିସସ୍‌ଙ୍କ ମୃତ୍ୟୁପରେ ପ୍ରଥମ ଡେରିୟସ ଖ୍ରୀଷ୍ଟପୂର୍ବ ୫୨୧ ଅବ୍ଦରେ ପାରସ୍ୟର ସମ୍ରାଟ ହେଲେ । ସେ ପ୍ରବଳ ପରାକ୍ରମୀ ଓ ପାରସିକ ଆର୍ଯ୍ୟ ଜାତିର ଶ୍ରେଷ୍ଠ ସମ୍ରାଟ୍ ଥିଲେ । ସେ ଯୁଦ୍ଧଯାତ୍ରା କରି ଅଳ୍ପକାଳ ମଧ୍ୟରେ ସମଗ୍ର ଏସିଆମାଇନର, ସିରିଆ, ପ୍ରାଚୀନ ଏସିରିଆ ଓ ବେବିଲୋନୀୟ ରାଜ୍ୟ, ମିଶର, କକେସସ୍ ପର୍ବତମାଳାର ଦକ୍ଷିଣସ୍ଥ ରାଜ୍ୟ ଓ କାସ୍ପିୟାନ ଏବଂ ଆରଲ ହ୍ରଦର ମଧ୍ୟବର୍ତ୍ତୀ ଅଞ୍ଚଳ ତାଙ୍କ ସାମ୍ରାଜ୍ୟଭୁକ୍ତ କରିଥିଲେ । ସେ ଭାରତର ସିନ୍ଧୁନଦୀ କୂଳବର୍ତ୍ତୀ ଗାନ୍ଧାର ପ୍ରଦେଶ ଜୟ କରିଥିଲେ । ସେତେବେଳେ ଗାନ୍ଧାର ଦେଶ ପାରସ୍ୟ ସାମ୍ରାଜ୍ୟର ଶ୍ରେଷ୍ଠ ଧନଶାଳୀ ଓ ଜନାକୀର୍ଣ୍ଣ ଅଞ୍ଚଳ ଥିଲା । ଡେରିୟସ ଗ୍ରୀସ୍ ଦେଶ ଆକ୍ରମଣ କରିଥିଲେ; ମାତ୍ର ଏଥେନ୍‌ସର ଗ୍ରୀକ୍‌ମାନେ ତାଙ୍କୁ ପ୍ରସିଦ୍ଧ **ମାରଥନ୍** ଯୁଦ୍ଧ କ୍ଷେତ୍ରରେ ପରାସ୍ତ କରିଥିଲେ । ଖ୍ରୀଷ୍ଟପୂର୍ବ ୪୮୦ ଅବ୍ଦରେ ଡେରିୟସ **ଇଉଟି** ନାମକ ଏକ ଯାଯାବର ଜାତି ସହିତ ଯୁଦ୍ଧ କରୁଥିବା ବେଳେ ନିହତ ହୋଇଥିଲେ ।

ଡେରିୟସ୍ ଏକ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କରି ଉନ୍ନତ ଶାସନପ୍ରଣାଳୀ ପ୍ରଚଳନ କରିଥିଲେ । ତାଙ୍କ ସମୟରେ ତାଙ୍କ ସାମ୍ରାଜ୍ୟର ରାଜଧାନୀ **ସୁସା** ଏକ ଧନଜନଶାଳୀ ଓ ସୁନ୍ଦର

ପ୍ରାସାଦମାଳାମାନ ନଗରୀରେ ପରିଣତ ହୋଇଥିଲା । ଏହାଛଡ଼ା **ପାର୍ସି ପୋଲିସ୍, ଏକବାଟ୍‌ନା** ଆଦି ନଗରୀମାନ ସମୃଦ୍ଧିଶାଳୀ




ହୋଇଥିଲା । ନଗରଗୁଡ଼ିକ ପକ୍କା ସଡ଼କଦ୍ୱାରା ସଂଯୁକ୍ତ ହୋଇ ବ୍ୟବସାୟ, ବାଣିଜ୍ୟ ଓ ଡାକ ପ୍ରଚଳନର ଉନ୍ନତି ସାଧିତ ହୋଇଥିଲା । ଗଧ, ବଳଦ ଓ ଓଟଦ୍ୱାରା ମାଲପତ୍ର ପ୍ରେରଣ ବ୍ୟବସ୍ଥା ବଦଳରେ ଦ୍ରୁତଗାମୀ ଘୋଡ଼ା ଓ ଘୋଡ଼ାଗାଡ଼ି ପ୍ରଚଳନ କରାଯାଇଥିଲା ।

**ଜାରେକ୍‌ସସ୍‌** —ତାଙ୍କପରେ ତାଙ୍କ ପୁତ୍ର ଜାରେକ୍‌ସସ୍‌ ପାରସ୍ୟର ସମ୍ରାଟ ହୋଇ ପୁନର୍ବାର ଗ୍ରୀସ୍ ଆକ୍ରମଣ କରିଥିଲେ । ଏଥେନ୍‌ସର ବୀରମାନେ ଏଥର ପ୍ରାଣପଣେ ଯୁଦ୍ଧ କରି ପାରସ୍ୟ ସୈନ୍ୟମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରିଥିଲେ । ଏହାଦ୍ୱାରା ପାରସ୍ୟ ସାମ୍ରାଜ୍ୟ ଦୁର୍ବଳ ହୋଇ ପଡ଼ିଥିଲା । ଜାରେକ୍‌ସସ୍‌ଙ୍କ

ପରେ ତାଙ୍କ ବଂଶରେ ଅନ୍ୟ କେହି ଶକ୍ତିଶାଳୀ ସମ୍ରାଟ ନ ଥିଲେ । ଖ୍ରୀଷ୍ଟପୂର୍ବ ୩୩୧ରେ ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡାର ପାରସ୍ୟ ସମ୍ରାଟ ତୃତୀୟ ଡେରାୟସଙ୍କୁ ପରାସ୍ତ କରି ପାରସ୍ୟସାମ୍ରାଜ୍ୟ ଅଧିକାର କଲେ । ଫଳରେ ପାରସ୍ୟ ସାମ୍ରାଜ୍ୟର ଅବସାନ ଘଟିଲା ।

## ଗ୍ରୀକ୍ ଆର୍ଯ୍ୟ

ଖ୍ରୀଷ୍ଟପୂର୍ବ ୨୦୦୦ ଅବ୍ଦ ପରେ ଆର୍ଯ୍ୟଜାତିର କେତେକ ଦଳ ବଲକାନ୍ ଉପଦ୍ୱୀପରେ ପ୍ରବେଶ କରି ବସତି ସ୍ଥାପନ କରିଥିଲେ । ସେତେବେଳେ ଗ୍ରୀସ୍ ଉପକୂଳରେ ଓ ଭୂମଧ୍ୟ ସାଗରସ୍ଥ ଦ୍ୱୀପମାନଙ୍କରେ ଏକ ଉନ୍ନତ ଓ ସଭ୍ୟ ଜାତିର ଲୋକ ବାସ କରୁଥିଲେ । **କ୍ରୀଟ୍** ଦ୍ୱୀପ ଏହି ସଭ୍ୟତାର କେନ୍ଦ୍ର ଥିଲା । ଗ୍ରୀକ୍ ଆର୍ଯ୍ୟମାନେ ସେହି ସଭ୍ୟତାକୁ ଧ୍ୱଂସକରି ଗ୍ରୀସ୍‌ରେ ଏକ ନୂତନ ସଭ୍ୟତା ସୃଷ୍ଟି କରିଥିଲେ ।

**ଗ୍ରୀକ୍ ନଗର ରାଜ୍ୟ**—ଗ୍ରୀସ୍ ରାଜ୍ୟ ପାହାଡ଼, ପର୍ବତ, କ୍ଷୁଦ୍ର ନଦୀ, ପ୍ରଣାଳୀ ଏବଂ ଯୋଜକ ଦ୍ୱାରା ଖଣ୍ଡବିଖଣ୍ଡିତ ହୋଇ-ଅଛି । ଗ୍ରୀକ୍ ଆର୍ଯ୍ୟମାନେ ଏଥିରେ କ୍ଷୁଦ୍ର ନଗର-ରାଜ୍ୟ ସ୍ଥାପନ କରିଥିଲେ । ସାଧାରଣତଃ ଗୋଟିଏ ପାହାଡ଼ ଓ ଜଳଭୂମିକୁ କେନ୍ଦ୍ରକରି ତାହାର ଚାରିପାଖରେ ଗୋଟିଏ ନଗର-ରାଜ୍ୟ ନିର୍ମିତ ହୋଇଥିଲା । ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବାପାଇଁ ପ୍ରତ୍ୟେକ ନଗର-ରାଜ୍ୟ ଚତୁର୍ଦ୍ଦିଗରେ ଉଚ୍ଚ ପ୍ରାଚୀର ବେଷ୍ଟିତ ହୋଇଥିଲା । ନଗର ରାଜ୍ୟଗୁଡ଼ିକର ଅଧିବାସୀମାନେ ଅତିରିକ୍ତ ଦେଶପ୍ରେମୀ ଥିଲେ ଓ ନିଜ ରାଜ୍ୟର ସ୍ୱାଧୀନତା ରକ୍ଷାକରିବା ପାଇଁ ସେମାନେ ଶତ୍ରୁ ସହିତ ପ୍ରବଳ ଯୁଦ୍ଧକରି ପ୍ରାଣ ବିସର୍ଜନ କରିବାକୁ କୁଣ୍ଠିତ ହେଉ ନ ଥିଲେ ।

ବିଭିନ୍ନ ଗ୍ରୀକ୍ ନଗର-ରାଜ୍ୟ ମଧ୍ୟରେ ଏକତା ନ ଥିଲା । ତଥାପି ସମଗ୍ର ଗ୍ରୀକ୍ ଜାତିର ଲୋକେ ଗୋଟିଏ ଭାଷାଭାଷୀ ଓ ଏକ ଧର୍ମାବଲମ୍ବୀ ବୋଲି ଗର୍ବ ଅନୁଭବ କରୁଥିଲେ । ସମୟ ସମୟରେ ସେମାନଙ୍କ ଧର୍ମପର୍ବରେ ପ୍ରତ୍ୟେକ ନଗର-ରାଜ୍ୟର ପ୍ରତିନିଧି ଯୋଗ ଦେଉଥିଲେ । ପ୍ରତିବର୍ଷ ଏଥେନ୍ସ ନଗର-ରାଜ୍ୟରେ **ଅଲମ୍ପିକ କ୍ରୀଡ଼ା** ପ୍ରତିଯୋଗିତା ହେଉଥିଲା ଓ ସେଥିରେ ପ୍ରତ୍ୟେକ ନଗର-ରାଜ୍ୟର ଖେଳାଳି ଭାଗ ନେଉଥିଲେ । ଏତଦ୍ ବ୍ୟତୀତ ଗ୍ରୀକ୍ ସାହିତ୍ୟ ସେମାନଙ୍କୁ ଦୃଢ଼ ଜାତୀୟତା ଭାବରେ ବାନ୍ଧି ରଖିଥିଲା । ପ୍ରସିଦ୍ଧ ଗ୍ରୀକ୍ କବି **ହୋମରଙ୍କ** ରଚିତ **ଇଲିୟଡ୍** ଓ **ଓଡ଼ିଶୀ** ନାମକ ଦୁଇଟି ମହାକାବ୍ୟ ସମଗ୍ର ଗ୍ରୀସ୍‌ରେ ପଠିତ ହେଉଥିଲା । ବାହ୍ୟ ଶତ୍ରୁ ଆକ୍ରମଣ ବେଳେ ସମସ୍ତ ଗ୍ରୀକ୍ ନଗର-ରାଜ୍ୟ ଏକତାବଦ୍ଧ ହୋଇ ଶତ୍ରୁ ଆକ୍ରମଣର ପ୍ରତିରୋଧ କରୁଥିଲେ ।

ଗ୍ରୀକ୍ ନଗର-ରାଜ୍ୟମାନଙ୍କ ମଧ୍ୟରେ **ଏଥେନ୍ସ** ଓ **ସ୍ପାର୍ଟା** ପ୍ରଧାନ ଥିଲା । ମାତ୍ର ଏହି ଦୁଇ ରାଜ୍ୟର ଆଦର୍ଶ ଓ ଚଳାଣିଧାରା ସମ୍ପୂର୍ଣ୍ଣ ଭିନ୍ନ ଥିଲା । ସ୍ପାର୍ଟାର ଲୋକମାନେ ଶାରୀରିକ ଉତ୍କର୍ଷ ସାଧନ ପ୍ରତି ଓ ଏଥେନ୍ସର ଲୋକମାନେ ମାନସିକ ଉତ୍କର୍ଷ ସାଧନ ପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ସ୍ପାର୍ଟାବାସୀମାନେ ରାଜ୍ୟର ପ୍ରତ୍ୟେକ ନାଗରିକଙ୍କୁ ସୁସ୍ଥ ସବଳ, ରୂପବାନ୍ ଓ ଦକ୍ଷ ସୈନିକ ରୂପେ ଗଢ଼ିବାକୁ ଇଚ୍ଛା କରୁଥିଲେ । ଶିଶୁସନ୍ତାନ ଜନ୍ମହେଲେ ତାହାକୁ ନଗରରାଜ୍ୟର ଶାସନସଭାକୁ ଅଣାଯାଇ ଶାରୀରିକ ପରୀକ୍ଷା କରାଯାଉଥିଲା । ଯଦି ଶିଶୁଟି ବଳବାନ୍ ଓ ରୂପବାନ ବୋଲି ବିବେଚିତ ହେଉ ନ ଥିଲା ତାହାକୁ ପର୍ବତ ପାର୍ଶ୍ୱରେ

ଫୋପାଡ଼ି ଦିଆଯାଉଥିଲା । ସ୍ପାର୍ଟାର ଲୋକମାନେ ଶୈଶବାବସ୍ଥାରୁ ଖେଳ, କସରତ, ବ୍ୟାୟାମ ଓ ଯୁଦ୍ଧବିଦ୍ୟା ଶିକ୍ଷାକରି ଖୁବ୍ ସାହସୀ ଓ କଷ୍ଟସହିଷ୍ଣୁ ହେଉଥିଲେ । ଏଥେନ୍ସର ଲୋକେ ସାହିତ୍ୟ, କଳା, ସ୍ଥାପତ୍ୟ ଓ ଦର୍ଶନର ଉନ୍ନତି ସାଧନ କରିଥିଲେ ।



ଗ୍ରୀକ୍ ସାମ୍ରାଜ୍ୟ

ଏଥେନ୍ସର ଲୋକତନ୍ତ୍ର ଶାସନ ପ୍ରଥା ଅତି ଉନ୍ନତ ଥିଲା । ରାଜ୍ୟର ପ୍ରତ୍ୟେକ ନାଗରିକ ଲୋକସଭାର ସଭ୍ୟ ହେବା ଅଧିକାର ପାଇ-ଥିଲେ । ରାଜ୍ୟର ଶାସନମୁଖ୍ୟ ଭୋଟଦ୍ୱାରା ନିର୍ବାଚିତ ହେଉଥିଲେ । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀବେଳକୁ ଏଥେନ୍ସରେ ଏକ ଉନ୍ନତ ଲୋକତନ୍ତ୍ର ଶାସନ ପ୍ରତିଷ୍ଠିତ ହୋଇଥିଲା । ଖ୍ରୀଷ୍ଟପୂର୍ବ ୪୬୧ରୁ ୪୨୮ ପର୍ଯ୍ୟନ୍ତ ସାର୍ଦ୍ଧ ୩୩ ବର୍ଷ କାଳ ଏଥେନ୍ସର ଜନନେତା **ପେରିକ୍ଲିସ** ଏଥେନ୍ସର ଶାସକ ଥିଲେ । ତାଙ୍କ ଶାସନକାଳରେ ଏଥେନ୍ସ ନାନା ଯୁଦ୍ଧରେ ଲିପ୍ତ ଥିଲେ ମଧ୍ୟ ସେଠାରେ ଗ୍ରୀକ୍ ସଭ୍ୟତାର ଚରମ ବିକାଶ ସାଧିତ ହୋଇଥିଲା ।

## ରୋମାନ ଆର୍ଯ୍ୟ

ଆର୍ଯ୍ୟମାନଙ୍କର ଗୋଟିଏ ଶାଖା ଖ୍ରୀଷ୍ଟପୂର୍ବ ଦୁଇ ହଜାର ବର୍ଷ ପୂର୍ବେ ଇଟାଲୀର ଦକ୍ଷିଣ ପଶ୍ଚିମାଞ୍ଚଳରେ ବସତି ସ୍ଥାପନ କରିଥିଲେ । ସେମାନଙ୍କ ମଧ୍ୟରୁ କେତେକ ଖ୍ରୀଷ୍ଟପୂର୍ବ ଏକ ହଜାର ବର୍ଷବେଳକୁ ଇଟାଲୀର ଟାଇବର ନଦୀ କୂଳରେ ଥିବା ସାତୋଟି ପାହାଡ଼ ଉପରେ ବସତି ସ୍ଥାପନ କରିଥିଲେ । କାଳକ୍ରମେ ସେହି ସାତୋଟି ବସତି ଏକାଠି ମିଶି ରୋମ୍ ନାମକ ଏକ ନଗରୀ ନିର୍ମାଣ କଲେ । କିମ୍ବଦନ୍ତୀରୁ ଜଣାଯାଏ ଯେ **ରୋମୁଲସ୍** ଓ **ରେମସ୍** ନାମକ ଦୁଇଭାଇ ପ୍ରଥମେ ଏହି ରୋମ୍ ନଗରୀର ମୂଳଦୁଆ ସ୍ଥାପନ କରିଥିଲେ ।

**ସାଧାରଣତନ୍ତ୍ର ଶାସନ**—ରୋମୁଲସ୍ ରେମସଙ୍କୁ ହତ୍ୟାକରି ନିଜେ ଯେଉଁ ନଗରୀଟି ଗଢିଲେ ତାହା ତାଙ୍କ ନାମ ଅନୁସାରେ ରୋମ୍ ନଗରୀ ବୋଲି କଥିତ ହେଲା । ରୋମୁଲସ୍ ପ୍ରଥମେ ରୋମର ରାଜା ହୋଇଥିଲେ । ତାଙ୍କଠାରୁ ପ୍ରାୟ ୨୧୪ ବର୍ଷକାଳ ରୋମ୍‌ରେ ରାଜତନ୍ତ୍ର ଶାସନ ଚାଲିଥିଲା । ଖ୍ରୀଷ୍ଟପୂର୍ବ ୫୦୯ ଅବ୍ଦରେ ରୋମର ଶେଷରାଜା **ଟାରକୁଇନସ୍** ଜନସାଧାରଣଙ୍କ ଦ୍ୱାରା ବିତାଡ଼ିତ ହେଲେ ଓ ସେହି ଦିନରୁ ରୋମରେ ସାଧାରଣତନ୍ତ୍ର ଶାସନ ପ୍ରବର୍ତ୍ତିତ ହେଲା ।

ରାଜାଙ୍କୁ ତଡିଦେଇ ରୋମାନ୍‌ମାନେ ରୋମର ଶାସନପାଇଁ **ସିନେଟ୍** ଓ **ଲୋକସଭା** (Popular Assembly) ନାମକ ଦୁଇଟି ଶାସନସଭା ଗଢ଼ିଥିଲେ । ପ୍ରଥମେ ଶାସନକ୍ଷମତା ସମ୍ଭ୍ରାନ୍ତଲୋକଙ୍କ ହସ୍ତରେ ଥିଲା । ସାଧାରଣ-

ଲୋକମାନେ ବାରମ୍ବାର ଆନ୍ଦୋଳନ କରି ସେମାନଙ୍କଠାରୁ କିଛି କିଛି ଶାସନକ୍ଷମତା ଅଧିକାର କରିଥିଲେ । କାଳକ୍ରମେ ଧନୀ, ଗରିବ ଉଭୟଶ୍ରେଣୀ ଲୋକଙ୍କର ଶାସନ ଓ ସାମାଜିକ କ୍ଷେତ୍ରରେ ସମାନ ଅଧିକାର ରହିଲା ଏବଂ ଉଭୟ ଶ୍ରେଣୀ ମଧ୍ୟରେ ବୈବାହିକ ସମ୍ବନ୍ଧ ସ୍ଥାପିତ ହେଲା । ଏହାଦ୍ୱାରା ରୋମରେ ପ୍ରକୃତ ସାଧାରଣତନ୍ତ୍ର ଶାସନ ପ୍ରତିଷ୍ଠିତ ହେଲା ।

ଅଳ୍ପକାଳ ମଧ୍ୟରେ ରୋମର ଶ୍ରୀବୃଦ୍ଧି ହେବାକୁ ଲାଗିଲା । ରୋମୀୟମାନେ ସମଗ୍ର ଇଟାଲୀ ସହିତ ସ୍ପେନ୍‌ରୁ ମିଶର ପର୍ଯ୍ୟନ୍ତ ଏକ ବିଶାଳ ସାମ୍ରାଜ୍ୟ ଗଠନ କରିଥିଲେ । ବିଜିତ ରାଜ୍ୟମାନଙ୍କରୁ ଅଜସ୍ର ଧନସମ୍ପତ୍ତି ଓ ଦାସ-ଦାସୀ ଆଣି ଧନୀଲୋକମାନେ ଭୋଗ-ବିଳାସରେ କାଳ କଟାଇଲେ । ସିନେଟର ସଭ୍ୟମାନେ ସ୍ୱେଚ୍ଛାଚାରୀହୋଇ ଯଥେଚ୍ଛାଚାରର ଶାସନ ଚଳାଇଲେ । ଫଳରେ ଦେଶରେ ଅଶାନ୍ତି ଓ ଅରାଜକତା ବୃଦ୍ଧି ପାଇଲା । ରୋମ୍ ସାମ୍ରାଜ୍ୟର ଏହିପରି ଦୁର୍ଦ୍ଦିନରେ ଜୁଲିୟସ୍ ସିଜର୍ ନାମକ ଜଣେ ସେନାପତି ରୋମ୍‌ରେ ଦୃଢ଼ ଓ ଶୃଙ୍ଖଳିତ ଶାସନ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲେ ।

**ଜୁଲିୟସ୍ ସିଜର୍**—ଖ୍ରୀଷ୍ଟପୂର୍ବ ୧୦୦ ଅବ୍ଦରେ ଜୁଲିୟସ୍-ସିଜର୍ ଏକ ସମ୍ଭ୍ରାନ୍ତ ବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ସୁନ୍ଦର ରୂପ, ବାଗ୍ମିତା ଓ ମିଷ୍ଟାଳାପରେ ଜନସାଧାରଣ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ସେ ଜଣେ ସୁଦକ୍ଷ ସେନାପତି ଥିଲେ । ସିନେଟ୍‌ର ଅନୁମତି ନେଇ ସେ ଗଲ (ଫ୍ରାନ୍‌ସ), ଇଂଲଣ୍ଡ ଓ ଜର୍ମାନୀ ଜୟ କରିଥିଲେ । ରାଜ୍ୟ ପରେ ରାଜ୍ୟ ଜୟ କରିବାଦ୍ୱାରା ତାଙ୍କର କ୍ଷମତା ବଢ଼ିବାକୁ ଲାଗିଲା ।

ଏଥିରେ ସିନେଟର ସଭ୍ୟମାନେ ଆତଙ୍କିତ ହୋଇ ତାଙ୍କୁ ରୋମ୍‌କୁ ଫେରିଆସିବାକୁ ଆଦେଶ ଦେଲେ । ସିଜର ତାଙ୍କର ସୈନ୍ୟଦଳ ସହ ରୋମରେ ପହଞ୍ଚି ତାଙ୍କର ଶତ୍ରୁମାନଙ୍କୁ ଦମନ କଲେ । ସିନେଟର ସଭ୍ୟମାନେ ନିରୁପାୟ ହୋଇ ତାଙ୍କୁ ପ୍ରଥମେ ଦଶବର୍ଷ ପାଇଁ ଓ ପରେ ଆଜୀବନ ରୋମର ଶାସକ ରୂପେ ମନୋନୀତ କଲେ । ତଦ୍ୱାରା ରୋମରେ ସାଧାରଣତନ୍ତ୍ର ଶାସନ ଲୋପପାଇ ଏକଚ୍ଛତ୍ର ଶାସନ ପ୍ରତିଷ୍ଠିତ ହେଲା । ଏହା ରୋମର ସ୍ୱାଧୀନତା-ପ୍ରେମୀ ଲୋକଙ୍କ ପକ୍ଷରେ ଅସହ୍ୟ ହେଲା । ଅଳ୍ପଦିନ ପରେ ଖ୍ରୀଷ୍ଟପୂର୍ବ ୪୪ ଅବ୍ଦରେ ସେମାନେ ଏକଜୁଟ ହୋଇ ସିଜରଙ୍କୁ ସିନେଟ ଗୃହରେ ହତ୍ୟାକଲେ ।



[ ଜୁଲିୟସ ସିଜର ]

**ଅଗଷ୍ଟସ୍ ସିଜର**—ସିଜରଙ୍କ ମୃତ୍ୟୁ ପରେ ରୋମରେ ପୁଣି ଅରାଜକତା ଲାଗିରହିଲା । ପ୍ରାୟ ୧୩ ବର୍ଷ କାଳ ଗୃହଯୁଦ୍ଧ ଚାଲିଲା । ଶେଷରେ ସିଜରଙ୍କ ଜ୍ୟେଷ୍ଠପୁତ୍ର **ଅକ୍ଟାଭିୟାନ** ଖ୍ରୀଷ୍ଟପୂର୍ବ ୩୧ ଅବ୍ଦରେ ବିଜୟ ଲାଭ କଲେ । ଏହାର ତିନିବର୍ଷ ପରେ ସେ **ଅଗଷ୍ଟସ** ସିଜର୍ ନାମ ଧାରଣ କରି ରୋମର ସମ୍ରାଟ ହେଲେ । ସେ ରାଜତନ୍ତ୍ର ଓ ପ୍ରଜାତନ୍ତ୍ର ଶାସନର ମିଶ୍ରଣରେ

ଏକ ନୂତନ ଶାସନ ପ୍ରଣାଳୀ ଚଳାଇଥିଲେ । ତାଙ୍କ ରାଜତ୍ୱକାଳ-ମଧ୍ୟରେ ରୋମରେ ରାଜନୈତିକ ଓ ସାଂସ୍କୃତିକ ଉନ୍ନତି ଘଟିଥିଲା । ତାଙ୍କ ସମୟରେ ରୋମ୍ ସାମ୍ରାଜ୍ୟ ଉତ୍ତରରେ ରାଇନ ନଦୀଠାରୁ ଦକ୍ଷିଣରେ ସାହାରା ମରୁଭୂମି ପର୍ଯ୍ୟନ୍ତ ଓ ପୂର୍ବରେ ଇଉଫ୍ରେଟିସ୍ ନଦୀଠାରୁ ପଶ୍ଚିମରେ ଆଟ୍‌ଲାଣ୍ଟିକ ସାଗର ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ଅଗଷ୍ଟସ ରୋମ୍ ନଗରୀରେ ସୁନ୍ଦର ପ୍ରାସାଦ, ରାସ୍ତାଘାଟ ନିର୍ମାଣ କରାଇଥିଲେ । ସେ ବ୍ୟବସାୟ ବାଣିଜ୍ୟର ଉନ୍ନତି ଘଟାଇ ପ୍ରାଚ୍ୟ ପାଶ୍ଚାତ୍ୟ ମଧ୍ୟରେ ସମ୍ପର୍କ ପ୍ରତିଷ୍ଠା



ପ୍ରାଚୀନ ରୋମାନ ସାମ୍ରାଜ୍ୟ

କରିପାରିଥିଲେ । ଅଗଷ୍ଟସ୍‌ଙ୍କ ରାଜତ୍ୱକାଳ ରୋମ୍ ଇତିହାସରେ **ସୁବର୍ଣ୍ଣଯୁଗ** ବୋଲି ବର୍ଣ୍ଣିତ ହୋଇଅଛି । ଜୁଲିୟସ ଓ ଅଗଷ୍ଟସ୍‌ଙ୍କ ନାମ ଚିରସ୍ମରଣୀୟ କରିବାପାଇଁ ଦୁଇଟି ମାସର ନାମ ଜୁଲାଇ ଓ ଅଗଷ୍ଟ ରଖାଯାଇଅଛି । ଅଗଷ୍ଟସ୍‌ଙ୍କ ଦ୍ୱାରା ପ୍ରବର୍ତ୍ତିତ ଶାସନପଦ୍ଧତି ପ୍ରାୟ ୩୦୨ ବର୍ଷକାଳ ସୁଚାରୁରୂପେ କାର୍ଯ୍ୟକାରୀ ହୋଉଥିଲା ।

**ରୋମ୍ ସଭ୍ୟତା**—ରୋମାନ୍‌ମାନେ ବିଶାଳ ସାମ୍ରାଜ୍ୟ ଗଠନକରି ପୃଥିବୀରେ ଏକ ଉନ୍ନତ ସଭ୍ୟତାର ବିକାଶ ସାଧନ କରିଥିଲେ । ସେମାନଙ୍କଦ୍ୱାରା ପ୍ରଣୀତ ଆଇନ୍ ଓ ବିଚାର-ପ୍ରଣାଳୀ ରୋମାନ୍ ସଭ୍ୟତାର ଚରମ ନିଦର୍ଶନ ଅଟେ । କନଷ୍ଟାଣ୍ଟିନୋପଲର ସମ୍ରାଟ୍ ଜଷ୍ଟିନିଏନ୍ ( ଖ୍ରୀ: ୫୨୭-୫୬୫ ) ରୋମ୍‌ରେ ପ୍ରଚଳିତ ଆଇନଗୁଡ଼ିକ ସଂଗ୍ରହ କରି ଏକ ବ୍ୟବସ୍ଥାଗ୍ରନ୍ଥ ପ୍ରଣୟନ କରିଥିଲେ । ତାହା ପରବର୍ତ୍ତୀ କାଳରେ ୟୁରୋପର ବିଭିନ୍ନ ଦେଶମାନଙ୍କରେ ଅନୁସୃତ ହୋଇଥିଲା ।

ରୋମାନ୍‌ମାନଙ୍କର ଲାଟିନ୍‌ଭାଷା ଗ୍ରୀକ୍ ଭାଷାପରି ଉନ୍ନତ ଥିଲା । ଅନେକଗୁଡ଼ିଏ ନାଟକ, କାବ୍ୟ, ଇତିହାସ ପ୍ରଭୃତି ଲାଟିନ୍ ଭାଷାରେ ଲିଖିତ ହେବାରୁ ଲାଟିନ୍ ସାହିତ୍ୟର ଅଭିବୃଦ୍ଧି ଘଟିଥିଲା । ପରବର୍ତ୍ତୀ



[ କଲୋସିୟମ ]

କାଳରେ ଇଟାଲୀ, ଫ୍ରାନ୍‌ସ, ସ୍ପେନ୍ ଇତ୍ୟାଦି ପଶ୍ଚିମ-ୟୁରୋପୀୟ ଭାଷାଗୁଡ଼ିକ ଲାଟିନ୍ ଭାଷାରୁ ଉତ୍ପତ୍ତି ଲାଭ କରିଥିଲା ଏବଂ ରୋମାନ୍ ଲିପି ବିଭିନ୍ନ ୟୁରୋପୀୟ ଭାଷାର ଲିପିରୂପେ ଗୃହୀତ ହୋଇଥିଲା ।

ଗ୍ରୀକ୍‌ମାନଙ୍କପରେ ରୋମାନ୍‌ମାନେ ଶିଳ୍ପ ଓ ସ୍ଥାପତ୍ୟରେ ଉନ୍ନତି କରିଥିଲେ । ସେମାନଙ୍କଦ୍ୱାରା ନିର୍ମିତ ଅଟ୍ଟାଳିକା ମଧ୍ୟରେ ରୋମ୍‌ର ସିନେଟଗୃହ ଓ **କଲୋସିୟମ** ପ୍ରଧାନ । କଲୋସିୟମରେ ସର୍କସ, ମଲ୍ଲଯୁଦ୍ଧ ଏବଂ କ୍ରୀଡ଼ା-ପ୍ରତିଯୋଗିତା, ପଶୁଲଢ଼େଇ, ମନୁଷ୍ୟ ଓ ପଶୁ ମଧ୍ୟରେ ଲଢ଼େଇ ଆଦି ପ୍ରଦର୍ଶିତ ହେଉଥିଲା । ରୋମାନ୍‌ମାନେ ମର୍ମର ପ୍ରସ୍ତରରେ ବହୁ ସୁନ୍ଦର ଅଟ୍ଟାଳିକା ନିର୍ମାଣ କରୁଥିଲେ । ସେଥିରେ ଯେଉଁ ସ୍ତମ୍ଭ, ଝରକା ଓ ତୋରଣ ଆଦି ଥିଲା, ତାହାର ଅନୁକରଣରେ ପରବର୍ତ୍ତୀ କାଳରେ ବିଭିନ୍ନ ଦେଶରେ ଅଟ୍ଟାଳିକାମାନ ନିର୍ମିତ ହୋଇଥିଲା । ରୋମାନ-ମାନେ ପଥର ଓ ବ୍ରୋଞ୍ଜରେ ବହୁ ସୁନ୍ଦର ମୂର୍ତ୍ତି ତିଆରି କରିଥିଲେ । ଶାସନର ସୁବିଧା ନିମନ୍ତେ ଓ ସୈନ୍ୟ ପରିଚାଳନା ନିମନ୍ତେ ସେମାନେ ରାଜ୍ୟ ମଧ୍ୟରେ ପ୍ରଶସ୍ତ ରାସ୍ତାମାନ ନିର୍ମାଣ କରିଥିଲେ । ରାଜ୍ୟର ଚାରିଆଡ଼େ ରୋମ୍‌ର ଅନୁକରଣରେ ନଗରମାନ ନିର୍ମିତ ହୋଇଥିଲା । ଏହିସବୁ ବିଷୟରୁ ରୋମାନ୍‌ମାନଙ୍କର ଉନ୍ନତ ସଭ୍ୟତାର ପରିଚୟ ମିଳେ ।

## ଭାରତୀୟ ଆର୍ଯ୍ୟ

ପାରସ୍ୟର ଆର୍ଯ୍ୟମାନଙ୍କର ଏକ ଶାଖା ଖ୍ରୀଷ୍ଟଜନ୍ମର ପ୍ରାୟ ଦୁଇ ହଜାର ବର୍ଷପୂର୍ବେ ଭାରତର ଉତ୍ତର-ପଶ୍ଚିମ ଗିରିପଥବାଟେ ଆସି **ସପ୍ତସିନ୍ଧୁ** ଅଞ୍ଚଳରେ ବସତିସ୍ଥାପନ କରିଥିଲେ । ସିନ୍ଧୁନଦୀ ଓ ତାହାର ଉପନଦୀଗୁଡ଼ିକ ପ୍ରବାହିତ ଅଞ୍ଚଳକୁ ବେଦରେ **ସପ୍ତସିନ୍ଧୁ** ବୋଲଯାଏ । କ୍ରମେ ଆର୍ଯ୍ୟମାନେ ସମସ୍ତ ଉତ୍ତର-ଭାରତରେ ବ୍ୟାପ୍ତ ହୋଇଥିଲେ । ଏହାର ନାମ ଥିଲା **ଆର୍ଯ୍ୟାବର୍ତ୍ତ** ବା ଆର୍ଯ୍ୟମାନଙ୍କ ଦେଶ ।

**ଆର୍ଯ୍ୟମାନଙ୍କର ଧର୍ମ**—ଆର୍ଯ୍ୟମାନେ ଆକାଶ, ସୂର୍ଯ୍ୟ, ବାୟୁ, ମେଘ, ଅଗ୍ନି ପ୍ରଭୃତି ପ୍ରକୃତିର ବିଭିନ୍ନ ଶକ୍ତିକୁ ଦେବାଦେବୀ-ରୂପେ ପୂଜା କରୁଥିଲେ । ତଥାପି ଈଶ୍ବର ଏକବୋଲି ସେମାନେ ବିଶ୍ବାସ କରୁଥିଲେ । ସେମାନଙ୍କ ଧର୍ମର ସମସ୍ତ ସ୍ତୋତ୍ରସମ୍ବଳିତ ଧର୍ମଗ୍ରନ୍ଥକୁ **'ବେଦ'** କୁହାଯାଏ ।

**ଆର୍ଯ୍ୟ-ସମାଜ**—ଆର୍ଯ୍ୟମାନେ ନଦୀ-ଉପତ୍ୟକାରେ ବସବାସ କରି ପଶୁପାଳନ ଓ କୃଷିଦ୍ଵାରା ଜୀବିକା ନିର୍ବାହ କରୁଥିଲେ । ବୈଦିକ ଯୁଗରେ ସେମାନେ ବିଭିନ୍ନ ଶିଳ୍ପ ଓ ବୃତ୍ତି ମଧ୍ୟ ଅବଲମ୍ବନ କରୁଥିଲେ । ସୂତାକଟା, ଲୁଗାବୁଣା, କାଠକାମ, ଅନ୍ୟାନ୍ୟ କୁଟିରଶିଳ୍ପ ସେଥିମଧ୍ୟରେ ପ୍ରଧାନ । ଗହମ, ଯବ, ଦୁଧ, ଫଳମୂଳ, ମାଛ, ମାଂସ ସେମାନଙ୍କର ପ୍ରଧାନ ଖାଦ୍ୟ ଥିଲା । ପର୍ବ-ପର୍ବାଣିରେ ସେମାନେ **ସୋମରସ** ନାମକ ଏକପ୍ରକାର ମଦ୍ୟପାନ କରୁଥିଲେ । ସେମାନେ ଖେଳ-କସରତ୍, ସଙ୍ଗୀତ, ନୃତ୍ୟ, ବାଦ୍ୟ, ପଶାଖେଳ, ରଥଚାଳନା ପ୍ରଭୃତିରେ ଅବସର ସମୟ କଟାଉଥିଲେ । ସେମାନେ ତୁଳା ଓ ପଶମନିର୍ମିତ ବସ୍ତ୍ର ପରିଧାନ କରୁଥିଲେ । ବୈଦିକ ଯୁଗରେ ପୂଜା, ଯାଗଯଜ୍ଞ ଇତ୍ୟାଦିରେ ଓ ଧର୍ମଶାସ୍ତ୍ର ଆଲୋଚନାରେ ନାରୀମାନେ ପୁରୁଷମାନଙ୍କ ସହିତ ଯୋଗ ଦେଉଥିଲେ ।

**ବର୍ଣ୍ଣାଶ୍ରମ**—ବୈଦିକଯୁଗରେ ଆର୍ଯ୍ୟମାନଙ୍କର ସାମାଜିକ ଜୀବନରେ ବର୍ଣ୍ଣାଶ୍ରମ ଧର୍ମ ପ୍ରାଧାନ୍ୟ ଲାଭ କରିଥିଲା । ବର୍ଣ୍ଣାଶ୍ରମଧର୍ମ ଦୁଇ ଭାଗରେ ବିଭକ୍ତ; ଯଥା—(୧) ବର୍ଣ୍ଣଧର୍ମ ଓ ଆଶ୍ରମଧର୍ମ । **ବର୍ଣ୍ଣଧର୍ମର** ଅର୍ଥ ଜାତିବିଭାଗ । ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଥମେ କୌଣସି ଜାତି ବିଭାଗ ନ ଥିଲା । କାଳକ୍ରମେ ବୃତ୍ତି ଅନୁସାରେ ସମାଜରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହିପରି ଚାରୋଟି ପ୍ରଧାନ

ବିଭାଗର ସୃଷ୍ଟି ହେଲା । **ଆଶ୍ରମଧର୍ମ** ବ୍ୟକ୍ତିଗତ ଜୀବନର ଚାରୋଟି ଅବସ୍ଥାର ନିର୍ଦ୍ଦେଶକ । ଜୀବନର ପ୍ରଥମ ଅବସ୍ଥା ହେଉଛି ବ୍ରହ୍ମଚର୍ଯ୍ୟାଶ୍ରମ । ଏହି ସମୟରେ ଛାତ୍ର ଗୁରୁଗୃହରେ ରହି ବିଦ୍ୟାଶିକ୍ଷା କରେ ଓ ବ୍ରହ୍ମଚାରୀଭାବରେ ସମୟ କଟାଏ । ଦ୍ୱିତୀୟ ଅବସ୍ଥା ହେଉଛି ଗୃହସ୍ଥାଶ୍ରମ । ଏହି ଅବସ୍ଥାରେ ଛାତ୍ର ପ୍ରାପ୍ତବୟସ୍କ ହୋଇ ସ୍ୱଗୃହକୁ ଫେରିଯାଏ ଓ ବିବାହ କରି ଗୃହସ୍ଥଭାବରେ ରହେ । ତୃତୀୟ ଅବସ୍ଥାକୁ କୁହାଯାଏ ବାନପ୍ରସ୍ଥ । ଯୌବନାବସ୍ଥା ଅତିକ୍ରମ କଲେ ସେ ଗୃହ ଛାଡ଼ି ଅରଣ୍ୟରେ ବାସକରେ ଓ ଧର୍ମଚିନ୍ତାରେ କାଳାତିପାତ କରେ । ଶେଷ ବାର୍ଦ୍ଧକ୍ୟ ଆସିଲେ ସେ ସନ୍ନ୍ୟାସବୃତ୍ତି ଅବଲମ୍ବନ କରି କେବଳ ଈଶ୍ୱର ଚିନ୍ତାରେ ମଗ୍ନ ରହେ । ଏହି ଚତୁର୍ଥ ଅବସ୍ଥାର ନାମ ଯତିବ୍ରତ । ଏହି ଚାରୋଟି ଅବସ୍ଥା ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କ ପାଇଁ ଉଦ୍ଦିଷ୍ଟ ଥିଲା, ମାତ୍ର ଏଗୁଡ଼ିକ ସମାଜରେ ବାଧ୍ୟତାମୂଳକ ନ ଥିଲା ।

**ବେଦ ଓ ବୈଦିକ ଦର୍ଶନ**—ବେଦ ଆର୍ଯ୍ୟମାନଙ୍କର ପ୍ରଧାନ ଧର୍ମଗ୍ରନ୍ଥ । ଏହା ଋକ୍, ସାମ, ଯଜୁଃ ଓ ଅଥର୍ବ ଏହି ଚାରି ଭାଗରେ ବିଭକ୍ତ । ଏଥିରେ ଅଗ୍ନି, ବାୟୁ, ବରୁଣ, ଇନ୍ଦ୍ର, ସୂର୍ଯ୍ୟ ପ୍ରଭୃତି ଦେବଦେବୀଙ୍କ ସ୍ତବ ଓ ସ୍ତୁତିମାନ ଅଛି । ପରବର୍ତ୍ତୀ କାଳରେ ଆର୍ଯ୍ୟ ଋଷିମାନେ ଉପନିଷଦ ରଚନା କରି ଏକେଶ୍ୱରବାଦ ପ୍ରଚାର କରିଥିଲେ ।

**ଶାସନ ପ୍ରଣାଳୀ**—ବୈଦିକଯୁଗରେ ଆର୍ଯ୍ୟସମାଜ କେତେକ ପରିବାରକୁ ନେଇ ଗଠିତ ହୋଇଥିଲା । ପରିବାର-କର୍ତ୍ତାଙ୍କୁ 'ଗୃହସ୍ୱାମୀ' କୁହାଯାଉଥିଲା । କେତେଗୁଡ଼ିଏ ପରିବାରକୁ ନେଇ ଗ୍ରାମ ଗଠିତ ହେଉଥିଲା । ଗ୍ରାମର ମୁଖ୍ୟବ୍ୟକ୍ତିଙ୍କୁ **ଗ୍ରାମଣୀ** କୁହାଯାଉଥିଲା । ଗ୍ରାମଣୀଙ୍କଠାରେ ଗ୍ରାମର ଶାସନଭାର

ନ୍ୟସ୍ତ ଥିଲା । କେତେଗୁଡ଼ିଏ ଗ୍ରାମ ମିଶି ଗୋଟିଏ **ବଂଶ** ଓ କେତେଗୁଡ଼ିଏ 'ବଂଶ' ମିଶି ଗୋଟିଏ ରାଜ୍ୟ ହେଉଥିଲା । ବଂଶର ମୁଖ୍ୟ ଥିଲେ 'ବଂଶପତି' ଓ ରାଜ୍ୟର ମୁଖ୍ୟ ଥିଲେ 'ରାଜା' । ରାଜ୍ୟରେ 'ସଭା' ଓ 'ସମିତି' ନାମରେ ଦୁଇଟି ଶାସନ ଅନୁଷ୍ଠାନ ରହିଥିଲା । ଗ୍ରାମଣୀ, ବଂଶପତି, ପୁରୋହିତ ଓ ସେନାପତିଙ୍କୁ ନେଇ ସଭା ଗଠିତ ହୋଇଥିଲା ଏବଂ ଗୃହ-ସ୍ୱାମୀମାନଙ୍କୁ ନେଇ 'ସମିତି' ଗଠିତ ହୋଇଥିଲା । ସଭା ଅପେକ୍ଷା ସମିତିର କ୍ଷମତା ବେଶୀ ଥିଲା । ଅନ୍ୟ ରାଜ୍ୟ ସହିତ ଯୁଦ୍ଧ ବା ସନ୍ଧି କରିବାକୁ ହେଲେ ସମିତିର ମତ ନିଆଯାଉଥିଲା । ଏଥିରୁ ଜଣାପଡ଼େ; ଆର୍ଯ୍ୟଶାସନ-ପ୍ରଣାଳୀରେ ଗ୍ରାମର ସାଧାରଣ ଲୋକଙ୍କ କ୍ଷମତା ବେଶୀ ଥିଲା ।

## ନର୍ଡ଼ିକ ଆର୍ଯ୍ୟ

ଆର୍ଯ୍ୟ-ଜାତିର ଯେଉଁ ଶାଖା ୟୁରୋପର ଉତ୍ତର ପଶ୍ଚିମାଞ୍ଚଳକୁ ଗଲେ, ସେମାନଙ୍କୁ ନର୍ଡ଼ିକ ଆର୍ଯ୍ୟ ବୋଲାଯାଏ । ଏହି ନର୍ଡ଼ିକ ଆର୍ଯ୍ୟମାନେ **ଫ୍ରାଙ୍କ୍, ଟିଉଟନ୍, ସାକ୍‌ସନ୍, ଗଥ** ପ୍ରଭୃତି କେତେକ ଶାଖାରେ ବିଭକ୍ତ ହୋଇ ଗଥଲଣ୍ଡ, ଜର୍ମାନୀ, ଡେନମାର୍କ ପ୍ରଭୃତି ୟୁରୋପର ବିଭିନ୍ନ ଅଞ୍ଚଳରେ ବାସ କରିବାକୁ ଲାଗିଲେ । କାଳକ୍ରମେ ସେମାନଙ୍କ ମଧ୍ୟରୁ କେତେକ ରୋମ୍ ସାମ୍ରାଜ୍ୟରେ ବସତି ସ୍ଥାପନ କରିଥିଲେ । ନର୍ଡ଼ିକ ଆର୍ଯ୍ୟ-ମାନଙ୍କର ୟୁରୋପରେ ଯେତେ ଶାଖା ଥିଲା, ସେଥିରୁ ଫ୍ରାନ୍‌ସ ଅଧିବାସୀ ଫ୍ରାଙ୍କ୍‌ମାନେ ବିଶେଷ ଶକ୍ତିଶାଳୀ ହୋଇଥିଲେ ।

**ଫ୍ରାଙ୍କ୍ ସମ୍ରାଟ୍ ଚାର୍ଲିମେନ**—ଫ୍ରାନ୍‌ସ ଅଞ୍ଚଳର ଫ୍ରାଙ୍କ୍‌ମାନେ ଶକ୍ତିଶାଳୀ ହୋଇ ଗୋଟିଏ ସାମ୍ରାଜ୍ୟ ସ୍ଥାପନ କରିବାକୁ ସମର୍ଥ ହୋଇଥିଲେ । ଫ୍ରାଙ୍କ୍‌ନେତା **ଚାର୍ଲିସ୍ ମାର୍ଟେଲ**

ପଶ୍ଚିମରେ ପିରେନିଜ ପର୍ବତଠାରୁ ପୂର୍ବରେ ହଙ୍ଗେରି ପର୍ଯ୍ୟନ୍ତ ତାଙ୍କର ସାମ୍ରାଜ୍ୟ ବିସ୍ତାର କରିଥିଲେ । ସେ, ୭୩୨ ଖ୍ରୀଷ୍ଟାବ୍ଦରେ ଆରବୀୟ ମୁସଲମାନମାନଙ୍କୁ ପରାସ୍ତକରି ୟୁରୋପରୁ ସେମାନଙ୍କୁ ହଟାଇ ଦେଇଥିଲେ ।

ଚାର୍ଲସ୍ ମାର୍ଟେଲ୍‌ଙ୍କ ପୌତ୍ର ଚାର୍ଲିମେନ୍ ଫ୍ରାଙ୍କ ସାମ୍ରାଜ୍ୟର ସର୍ବଶ୍ରେଷ୍ଠ ସମ୍ରାଟ ଥିଲେ । ସେ ୭୬୮ ଖ୍ରୀଷ୍ଟାବ୍ଦରେ ଫ୍ରାଙ୍କ ସାମ୍ରାଜ୍ୟର ସମ୍ରାଟ ହେଲେ । ବହୁ ଯୁଦ୍ଧ ପରେ ସେ ସମଗ୍ର ଫ୍ରାନ୍ସ, ଜର୍ମାନୀ, ହଲାଣ୍ଡ, ବେଲଜିୟମ, ଅଷ୍ଟ୍ରିଆ ଓ ଇଟାଲୀର




ଅଧିକାଂଶ ଅଞ୍ଚଳ ଜୟ କରି ଏକ ବିଶାଳ ସାମ୍ରାଜ୍ୟ ଗଠନ କରିଥିଲେ । ସେ ଖ୍ରୀଷ୍ଟଧର୍ମର ପ୍ରଧାନ ପୃଷ୍ଠପୋଷକ ଥିଲେ । ତାଙ୍କର ପ୍ରବଳ ଚେଷ୍ଟା ଫଳରେ ସମଗ୍ର ନର୍ଡିକ୍ ଜାତିର ଲୋକେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଥିଲେ । ସେ ମୁସଲମାନମାନଙ୍କ

ବିରୁଦ୍ଧରେ ଧର୍ମଯୁଦ୍ଧ ଘୋଷଣା କରି ଉତ୍ତର ସ୍ପେନ୍‌ରୁ ମୁସଲମାନ ଅଧିପତ୍ୟ ଲୋପ କରିଥିଲେ ।

ଏଥିରେ ଖ୍ରୀଷ୍ଟିୟାନ୍ ଜଗତର ଧର୍ମଗୁରୁ ପୋପ୍ ମୁଗ୍ଧହୋଇ ତାଙ୍କ ମସ୍ତକରେ ସୁବର୍ଣ୍ଣର ମୁକୁଟ ପିନ୍ଧାଇ ଦେଇଥିଲେ ଓ ତାଙ୍କୁ ପବିତ୍ର **ରୋମାନ୍ ସାମ୍ରାଜ୍ୟର ସମ୍ରାଟ** ବୋଲି ଘୋଷଣା କରିଥିଲେ । ଚାର୍ଲିମେନଙ୍କ ଶାସନାଧୀନରେ ଏକ 'ପବିତ୍ର ରୋମାନ ସାମ୍ରାଜ୍ୟ' ପ୍ରତିଷ୍ଠିତ ହେଲା । ଏହି ସାମ୍ରାଜ୍ୟର ଧର୍ମାଧିପତି ହେଲେ ପୋପ ଓ ଶାସନାଧିପତି ହେଲେ ଚାର୍ଲିମେନ୍ । ୮୧୪ ଖ୍ରୀଷ୍ଟାବ୍ଦରେ ଚାର୍ଲିମେନ୍‌ଙ୍କର ମୃତ୍ୟୁ ହେଲା ।

ଚାର୍ଲିମେନଙ୍କ ଦୁର୍ବଳ ବଂଶଧରଙ୍କ ରାଜତ୍ୱକାଳରେ ପଶ୍ଚିମ ୟୁରୋପରେ ଅଶାନ୍ତି ଓ ଅରାଜକତା ବ୍ୟାପିଗଲା । ଖ୍ରୀଷ୍ଟଧର୍ମ ପୁରୋହିତମାନେ ଅଖଣ୍ଡ ପ୍ରଭୁତ୍ୱ ବିସ୍ତାର କରି ୟୁରୋପକୁ **ଖ୍ରୀଷ୍ଟେଣ୍ଡମ୍** ବା "ଖ୍ରୀଷ୍ଟଙ୍କ ରାଜ୍ୟ" ବୋଲି ଘୋଷଣା କଲେ ଓ ପୋପ୍ ସେହି "ଖ୍ରୀଷ୍ଟେଣ୍ଡମ୍"ର ଅଧୀଶ୍ୱର ବୋଲି ଘୋଷଣା କଲେ । ଏହି ସମୟରେ ସାମନ୍ତପ୍ରଥାର ପ୍ରଚଳନ ହୋଇଥିଲା । ଗରିବ ପ୍ରଜାମାନେ ନିରାପଦରେ ରହିବା ପାଇଁ ସେମାନଙ୍କ ଜମିବାଡ଼ି ସାମନ୍ତମାନଙ୍କୁ ଦେଇ ସେମାନଙ୍କର ଆଶ୍ରିତ ହୋଇଗଲେ ।

ନର୍ଡିକ୍ ସାମନ୍ତମାନେ ବୀରତ୍ୱ ଓ ସାମରିକ ଦକ୍ଷତା ପ୍ରଦର୍ଶନ କରି ମଧ୍ୟଯୁଗରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ମଧ୍ୟଯୁଗରେ ୟୁରୋପରେ ଅତି ସୁନ୍ଦର କାଉଣ୍ଟ୍ରୀ ଗୀର୍ଜା ଓ ଅଟ୍ଟାଳିକାମାନ ନିର୍ମିତ ହୋଇଥିଲା । ସେଥିରେ ପ୍ରକାଶ ପାଇଥିବା ନିର୍ମାଣ କୌଶଳ **ଗଥିକ୍** କଳା ନାମରେ ପ୍ରସିଦ୍ଧି ଲାଭ କରିଥିଲା ।

---

## ଷଷ୍ଠ ଅଧ୍ୟାୟ

## ହିବ୍ରୁଜାତି ଓ ଏକେଶ୍ୱରବାଦ

ପ୍ରାଚୀନ କାଳରେ ହିବ୍ରୁ ବା ଇହୁଦୀମାନେ ଆରବ-ମରୁଭୂମିରେ ଯାଯାବର ଜୀବନଯାପନ କରୁଥିଲେ । ଖ୍ରୀଷ୍ଟପୂର୍ବ ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ସେମାନେ **ଅବ୍ରାହମ୍‌ଙ୍କ** ନେତୃତ୍ୱରେ ଭୂମଧ୍ୟସାଗର ଉପକୂଳସ୍ଥ ପାଲେଷ୍ଟାଇନ୍ ଅଞ୍ଚଳରେ ବସତି ସ୍ଥାପନ କଲେ । ସେମାନେ ପ୍ରାୟ ଏକଶହ ବର୍ଷ ସୁଖରେ ବାସ କଲାପରେ ସେହି ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଲା । ଦୁର୍ଭିକ୍ଷ ହାତରୁ ସେମାନଙ୍କୁ ରକ୍ଷା କରିବାପାଇଁ ଆବ୍ରାହମ୍‌ଙ୍କ ପୌତ୍ର **ଜେକବ୍** ସେମାନଙ୍କୁ ପାଲେଷ୍ଟାଇନ୍‌ରୁ ମିଶର ଦେଶକୁ ନେଇ ଯାଇଥିଲେ । କାଳକ୍ରମେ ମିଶରର ରାଜା ସେମାନଙ୍କୁ ଦାସରୂପେ ବ୍ୟବହାର କରି ସେମାନଙ୍କ ଉପରେ ବହୁ ଅତ୍ୟାଚାର କଲେ । ସେତେବେଳେ ସେମାନଙ୍କ ମଧ୍ୟରେ **ମୋଷା** ନାମକ ଏକ ମହାପୁରୁଷ ଆବିର୍ଭୂତ ହେଲେ । ମୋଷାଙ୍କ ନେତୃତ୍ୱରେ ହିବ୍ରୁମାନେ ମିଶର ତ୍ୟାଗକରି ପାଲେଷ୍ଟାଇନକୁ ଫେରି ଆସିଲେ । ଲୋହିତ ସାଗର ପାରହେବା ପରେ ସେମାନେ ସିନାଇ ପର୍ବତ ନିକଟରେ ପହଞ୍ଚିଲେ । ମୋଷା ସେହି ପର୍ବତ ଶିଖର ଆରୋହଣ କରି ଦୁଇଖଣ୍ଡ ପଥର ଦେହରେ ଏକେଶ୍ୱର **ଜେହୋବାଙ୍କ** **'ଦଶ ଆଜ୍ଞା'** ଲେଖା ହୋଇଥିବା ଦେଖିଥିଲେ । ସେହି **ଦଶ ଆଜ୍ଞା** ହେଉଛି, (୧) ଜେହୋବା ହେଉଛନ୍ତି ଏକ ଈଶ୍ୱର ଓ ତାଙ୍କ ଭିନ୍ନ ଅନ୍ୟ କେହି ଦେବତା ନାହାନ୍ତି,(୨) ଜେହୋବାଙ୍କ ଠାରେ ଅଟଳ ବିଶ୍ୱାସ ରଖ ଏବଂ କୌଣସି ପ୍ରତିମା ପୂଜା କରନାହିଁ,

(୩) ବିନା ଭକ୍ତିରେ ଜେହୋବାଙ୍କ ନାମ ଉଚ୍ଚାରଣ କର ନାହିଁ, (୪) ସପ୍ତାହର ଶେଷଦିବସ (ରବିବାର) ଏକ ପବିତ୍ର ଦିବସ-ରୂପେ ପାଳନ କର, (୫) ପିତାମାତାଙ୍କୁ ଭକ୍ତିକର, (୬) ଜୀବ ହତ୍ୟା କର ନାହିଁ (୭) ସର୍ବଦା ସଚ୍ଚରିତ୍ର ହୁଅ, (୮) ଚୋରି କର ନାହିଁ, (୯) ମିଥ୍ୟା କହ ନାହିଁ, (୧୦) ପ୍ରତିବେଶୀମାନଙ୍କ ପ୍ରତି ଉଦାର ବ୍ୟବହାର ପ୍ରଦର୍ଶନ କର ।

ମୋଷା ହିବ୍ରୁମାନଙ୍କ ମଧ୍ୟରେ ଦଶଆଜ୍ଞା ପ୍ରଚାର କରିଥିଲେ ଓ ସେମାନଙ୍କୁ ବହୁ ନୀତି ନିୟମ ଶିକ୍ଷା ଦେଇଥିଲେ । ସେସବୁ ପରବର୍ତ୍ତୀ କାଳରେ ଇହୁଦୀମାନଙ୍କର ଧର୍ମଗ୍ରନ୍ଥ ବାଇବେଲର **ପ୍ରାଚୀନ ଟେଷ୍ଟାମେଣ୍ଟ** (Old Testament)ରେ ଲିପିବଦ୍ଧ ହୋଇଥିଲା । ବାଇବେଲ ଗ୍ରନ୍ଥ ଦୁଇ ଭାଗରେ ବିଭକ୍ତ, ଯଥା— ପ୍ରାଚୀନଟେଷ୍ଟାମେଣ୍ଟ ଓ ନୂତନ ଟେଷ୍ଟାମେଣ୍ଟ(New Testament) ପ୍ରାଚୀନ ଟେଷ୍ଟାମେଣ୍ଟରେ ଜେହୋବାଙ୍କ ଦଶଆଜ୍ଞା, ମୋଷାଙ୍କ ନୀତି ନିୟମ ଏବଂ ହିବ୍ରୁ ଜାତିର ବହୁ ମହାପୁରୁଷଙ୍କ କାର୍ଯ୍ୟ ଓ ଉପଦେଶାବଳୀ ଲିଖିତ ହୋଇଅଛି । ନୂତନ ଟେଷ୍ଟାମେଣ୍ଟରେ ଯୀଶୁଖ୍ରୀଷ୍ଟ ଏବଂ ତାଙ୍କର ପ୍ରଧାନ ଶିଷ୍ୟମାନଙ୍କ କାର୍ଯ୍ୟକଳାପ ଓ ଉପଦେଶାବଳୀ ରହିଅଛି । ନୂତନ ଟେଷ୍ଟାମେଣ୍ଟ ଖ୍ରୀଷ୍ଟିୟାନ୍-ମାନଙ୍କର ଓ ପ୍ରାଚୀନ ଟେଷ୍ଟାମେଣ୍ଟ ଇହୁଦୀମାନଙ୍କର ଧର୍ମପୁସ୍ତକ-ରୂପେ ସମ୍ମାନିତ ହୁଏ ।

## ଏକେଶ୍ୱରବାଦ

ବହୁ ପ୍ରାଚୀନକାଳରୁ ହିବ୍ରୁମାନେ ଏକେଶ୍ୱରବାଦୀ ହୋଇ ଜେହୋବାଙ୍କୁ ଏକମାତ୍ର ଈଶ୍ୱର ବୋଲି ବିଶ୍ୱାସ କରୁଥିଲେ । ମୋଷାଙ୍କ ଏକେଶ୍ୱରବାଦ ଫଳରେ ହିବ୍ରୁମାନଙ୍କ ମଧ୍ୟରେ ସେହି

ବିଶ୍ୱାସ ଦୃଢ଼ୀଭୂତ ହୋଇଥିଲା । ହିବ୍ରୁମାନଙ୍କର ଏକେଶ୍ୱରବାଦ ପରବର୍ତ୍ତୀକାଳରେ ଖ୍ରୀଷ୍ଟିୟାନ ଓ ମୁସଲମାନ ଧର୍ମର ଏକେଶ୍ୱର-ବାଦକୁ ପ୍ରଭାବିତ କରିଥିଲା, କିନ୍ତୁ ହିବ୍ରୁମାନଙ୍କ ଏକେଶ୍ୱର ବାଦରେ କେତେକ ଭ୍ରାନ୍ତ ଧାରଣା ଥିଲା । ସେମାନେ ବିଶ୍ୱାସ କରୁଥିଲେ ଯେ ଏକେଶ୍ୱର ଜେହୋବା କେବଳ ହିବ୍ରୁମାନଙ୍କର ଈଶ୍ୱର, ଅନ୍ୟ କାହାରି ନୁହନ୍ତି । ହିବ୍ରୁମାନେ ହିଁ କେବଳ ଜେହୋବାଙ୍କ କୃପାର ପାତ୍ର, ଅନ୍ୟମାନେ ନୁହନ୍ତି । ପରବର୍ତ୍ତୀ କାଳରେ ପ୍ରଭୁ ଯୀଶୁ ଯେତେବେଳେ ହିବ୍ରୁମାନଙ୍କ ମଧ୍ୟରେ ପ୍ରଚାର କଲେ ଯେ, ଈଶ୍ୱର ମାନବମାତ୍ରେ ସମସ୍ତଙ୍କର ଈଶ୍ୱର, ସେତେବେଳେ ହିବ୍ରୁମାନେ ଭାବିଲେ ଯୀଶୁ ସେମାନଙ୍କ ଈଶ୍ୱରଙ୍କୁ ଅନ୍ୟମାନଙ୍କୁ ଦେଇ ଦେଉଛନ୍ତି । ତେଣୁ ସେମାନେ ଯୀଶୁଙ୍କୁ ଧର୍ମଦ୍ରୋହୀ ବୋଲି ଭାବି ଷଡ଼ଯନ୍ତ୍ର କରି ହତ୍ୟା କରିଥିଲେ ।

**ମୋଷାଙ୍କ ପରବର୍ତ୍ତୀ କାଳରେ ହିବ୍ରୁ ଜାତି**—ଖ୍ରୀଷ୍ଟପୂର୍ବ ଦଶମ ଶତାବ୍ଦୀରେ ହିବ୍ରୁମାନଙ୍କର **ସୋଲମନ** ନାମରେ ଜଣେ ପ୍ରସିଦ୍ଧ ନେତା ଥିଲେ । ସେ ଜେରୁଜେଲମ ନଗରରେ ଏକ ସୁନ୍ଦର ପ୍ରାସାଦ ଓ ଗୋଟିଏ ବିଶାଳ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କର ହିବ୍ରୁ ରାଜ୍ୟ ଇସ୍ରାଏଲ ଓ ଜୁଡ଼ାନାମକ ଦୁଇଟି ରାଜ୍ୟରେ ବିଭକ୍ତ ହୋଇଥିଲା । କାଳକ୍ରମେ ହିବ୍ରୁମାନେ ତାଙ୍କ ବାସଭୂମିରୁ ବିତାଡ଼ିତ ହୋଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ମିଳିତ ଜାତିସଂଘ ଚେଷ୍ଟାରେ ଇସ୍ରାଏଲ ରାଜ୍ୟ ଗଠିତ ହୋଇ ତାହା ହିବ୍ରୁମାନଙ୍କର ମାତୃଭୂମି ବୋଲି ଘୋଷିତ ହେଲା ।

---

## ସପ୍ତମ ଅଧ୍ୟାୟ

## ଧର୍ମପ୍ରଚାରକଗଣ—ବୁଦ୍ଧ, କନଫୁସିୟସ୍ ଓ ଲାଓସୀ

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ପୃଥିବୀର ବିଭିନ୍ନ ଦେଶରେ କେତେକ ମହାପୁରୁଷ ଜନ୍ମଗ୍ରହଣ କରି ମନୁଷ୍ୟମାନଙ୍କୁ ନୂତନ ଧର୍ମମାର୍ଗ ପ୍ରଦର୍ଶନ କରାଇଥିଲେ । ସେହି ମହାପୁରୁଷମାନଙ୍କ ମଧ୍ୟରେ **ବୁଦ୍ଧ, କନ୍‌ଫୁସିୟସ୍** ଓ **ଲାଓସୀ** ପ୍ରଧାନ ।

**ଗୌତମ ବୁଦ୍ଧ**—ବୁଦ୍ଧଙ୍କ ପିଲାଦିନର ନାମ ଗୌତମ । ସେ ନେପାଳ ଅନ୍ତର୍ଗତ କପିଳବାସ୍ତୁ ନଗର-ରାଜ୍ୟରେ **ଶାକ୍ୟ** ରାଜପରିବାରରେ ଜନ୍ମଗ୍ରହଣ କରିଥିଲେ । ଜନ୍ମ ହେବାର ସାତ ଦିନ ପରେ ତାଙ୍କ ମାତା **ମାୟାଦେବୀ** ପ୍ରାଣତ୍ୟାଗ କରିଥିଲେ । ଗୌତମ ବାଲ୍ୟକାଳରୁ ବଡ଼ ଚିନ୍ତାଶୀଳ ଥିଲେ । ପିତା **ଶୁଦ୍ଧୋଦନ** ତାଙ୍କୁ ଭୋଗ-ବିଳାସରେ ବୁଡ଼ାଇ ରଖିବାକୁ ଚେଷ୍ଟା କରିଥିଲେ । ଯୌବନାବସ୍ଥାରେ ଗୌତମ **ଯଶୋଧାରା** ନାମ୍ନୀ ଏକ ରୂପବତୀ ରାଜକନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କର ଏକ ପୁତ୍ର ଜାତ ହୋଇଥିଲା । ତାହାର ନାମ **ରାହୁଲ** । ତଥାପି ସେ ସଂସାରର ସମସ୍ତ ମାୟା ଛିନ୍ନକରି ୩୦ ବର୍ଷ ବୟସରେ ସନ୍ନ୍ୟାସୀ ହୋଇ ଚାଲିଗଲେ । ସେ ପ୍ରଥମେ କେତେକ ଗୁରୁଙ୍କର ଶିଷ୍ୟ ହୋଇଥିଲେ, ମାତ୍ର ସେଥିରେ ସେ ପ୍ରକୃତ ଜ୍ଞାନଲାଭର ଆଶା ନ ଦେଖି ଅରଣ୍ୟରେ ଛଅ ବର୍ଷ କାଳ କଠୋର ତପସ୍ୟା କରିଥିଲେ । ଦେହକୁ ବହୁ କଷ୍ଟ ଦେଇ ମଧ୍ୟ ସେ ପ୍ରକୃତ ଜ୍ଞାନ ପାଇ ପାରିଲେ

ନାହିଁ । ତପୂର୍ବରେ ସେ ଗୟା ନିକଟବର୍ତ୍ତୀ **ନିରଞ୍ଜନା** ନଦୀ କୂଳରେ ଗୋଟିଏ ଅଶ୍ୱତ୍ଥ ବୃକ୍ଷ ମୂଳରେ ବସି ଧ୍ୟାନମଗ୍ନ ହେଲେ । ଶେଷରେ ତାଙ୍କର ଜ୍ଞାନଲାଭ ହେଲା । ସେହିସମୟରୁ ସେ **ଜ୍ଞାନୀ** ବା **ବୁଦ୍ଧ** ନାମରେ ପରିଚିତ ହେଲେ । ସେହି ଅଶ୍ୱତ୍ଥ ବୃକ୍ଷ **ବୋଧିଦ୍ରୁମ** ନାମରେ ପରିଚିତ ।



[ ବୁଦ୍ଧଦେବ ]

ସେହି ସମୟରୁ ମୃତ୍ୟୁପର୍ଯ୍ୟନ୍ତ ବୁଦ୍ଧ ମାନବ ସମାଜ ମଧ୍ୟରେ ବୁଲି ଉପଲବ୍ଧି କରିଥିବା ସତ୍ୟ ପ୍ରଚାର କରିଥିଲେ । ବୁଦ୍ଧ ଚାରୋଟି ସତ୍ୟ ପ୍ରଚାର କରିଥିଲେ ଓ ତାହାକୁ ସେ '**ଚତୁରାର୍ଯ୍ୟସତ୍ୟ**' ବୋଲି କହୁଥିଲେ । ସେ ପ୍ରଚାର କରିଥିଲେ (୧) ଜୀବନ ଦୁଃଖପୂର୍ଣ୍ଣ, (୨) ଦୁଃଖର କାରଣ ହେଉଛି କାମନା । (୩) କାମନାର ବିନାଶରେ ଦୁଃଖର ବିନାଶ ଓ କାମନା ବିନାଶ ପାଇଁ ସେ ଯେଉଁ ଆଠଗୋଟି ମାର୍ଗ ପ୍ରଦର୍ଶନ କରିଥିଲେ ତାହା ହେଉଛି ଚତୁର୍ଥ ସତ୍ୟ । ତାହାକୁ ସେ "**ଆର୍ଯ୍ୟଅଷ୍ଟାଙ୍ଗିକ ମାର୍ଗ**"ବୋଲି କହୁଥିଲେ । ଅଷ୍ଟମାର୍ଗ ହେଉଛି—ସତ୍ ସଙ୍କଳ୍ପ, ସତ୍ ବାକ୍ୟ, ସତ୍ କର୍ମ, ସତ୍ ଜୀବନ-

ଯାପନ, ସତ୍‌ଚେଷ୍ଟା, ସତ୍ ସ୍ମରଣ, ସତ୍ ଦର୍ଶନ ଓ ସତ୍‌ଧ୍ୟାନ । ବୁଦ୍ଧ ସରଳ ଓ ମିତମୟ ଜୀବନ ଯାପନ କରିବାପାଇଁ ଲୋକମାନଙ୍କୁ ଶିକ୍ଷା ଦେଉଥିଲେ । ସେ କହୁଥିଲେ ଯେ, ମିତମୟ ନିଷ୍କାମ ଜୀବନଯାପନ କଲେ ନିର୍ବାଣ ବା ମୋକ୍ଷପ୍ରାପ୍ତି ହୁଏ । ନିଜର ଧର୍ମମତ ପ୍ରଚାର କରିବାପାଇଁ ବୁଦ୍ଧ ସଂଘମାନ ସ୍ଥାପନ କରିଥିଲେ । ବୌଦ୍ଧଧର୍ମରେ ପ୍ରାଣୀହିଂସା ଓ ପ୍ରାଣୀହତ୍ୟା ମହାପାପ ବୋଲି ବିବେଚିତ ହୁଏ । ସର୍ବଦା ଅହିଂସା ନୀତି ଅନୁସରଣ କରିବାପାଇଁ ସେ ଉପଦେଶ ଦେଉଥିଲେ ।

ବୁଦ୍ଧ ତାଙ୍କର ଧର୍ମନୀତି ସରଳ ପ୍ରାକୃତ ଭାଷାରେ ପ୍ରଚାର କରୁଥିଲେ । ତେଣୁ ସହସ୍ର ସହସ୍ର ନରନାରୀ ତାଙ୍କ ଧର୍ମପ୍ରତି ଆକୃଷ୍ଟ ହୋଇଥିଲେ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ସମ୍ରାଟ୍ **ଅଶୋକ**ଙ୍କ ଚେଷ୍ଟାରେ ଏହି ଧର୍ମ ଭାରତ ବାହାରେ ସିଂହଳ, ବ୍ରହ୍ମଦେଶ, ମିଶର, ସିରିଆ ପ୍ରଭୃତି ଦେଶରେ ପ୍ରଚାରିତ ହୋଇଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ସମ୍ରାଟ୍ **କନିଷ୍କ**ଙ୍କ ରାଜତ୍ୱ କାଳରେ ବୌଦ୍ଧଧର୍ମ ତିବ୍ବତ, ଚୀନ, ଶ୍ୟାମ, କାମ୍ବୋଡ଼ିଆ ଇତ୍ୟାଦିରେ ବ୍ୟାପିଥିଲା । ଚୀନ୍‌ରେ ପ୍ରଚଳିତ ଲାଓସି ଓ କନ୍‌ଫୁସିୟସ୍‌ଙ୍କ ନୀତି ସହିତ ବୌଦ୍ଧଧର୍ମର ସାମ୍ୟ ଥିବାରୁ ବୌଦ୍ଧଧର୍ମ ଚୀନ୍‌ରେ ଆଦୃତ ହୋଇଥିଲା । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ଏହା କୋରିଆକୁ ଓ କୋରିଆରୁ ଜାପାନରେ ପ୍ରବେଶ କରିଥିଲା । ଏହିପରି ବୌଦ୍ଧଧର୍ମ ସମଗ୍ର ଏସିଆରେ ପରିବ୍ୟାପ୍ତ ହୋଇଥିଲା ଏବଂ ବୁଦ୍ଧ **ଏସିଆର ଆଲୋକ** ରୂପେ ସମ୍ମାନିତ ହୋଇଥିଲେ । ବର୍ତ୍ତମାନ ବୌଦ୍ଧଧର୍ମ ଭାରତରେ ଲୁପ୍ତପ୍ରାୟ ହେଲେ ମଧ୍ୟ ସମଗ୍ର ପୃଥିବୀର ଏକ-ତୃତୀୟାଂଶ ଲୋକ ବୌଦ୍ଧଧର୍ମାବଲମ୍ବୀ ଅଟନ୍ତି ।

**ଲାଓସୀ**—ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ବୁଦ୍ଧ ଉତ୍ତର ଭାରତରେ ତାଙ୍କର ଧର୍ମମତ ପ୍ରଚାର କରୁଥିବାବେଳେ **ଲାଓସୀ** ଦକ୍ଷିଣ ଚୀନ୍‌ରେ ଓ କନ୍‌ଫୁସିୟସ୍ ଉତ୍ତର ଚୀନ୍‌ରେ ନିଜ ନିଜର ମତ ପ୍ରଚାର କରୁଥିଲେ । ସେତେବେଳେ ଚୀନ୍ ଦେଶ ଶହ ଶହ କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା । ବିଭିନ୍ନ ରାଜ୍ୟମଧ୍ୟରେ ବିବାଦ ଲାଗି ରହିଥିଲା । ବାହ୍ୟଶତ୍ରୁ ହୁନ୍‌ମାନଙ୍କ ଆକ୍ରମଣରେ ଜନସାଧାରଣ ଅସ୍ତବ୍ୟସ୍ତ ହେଉଥିଲେ । ରାଜ୍ୟର ସୁଶାସନ ଅଭାବରୁ ଅନ୍ୟାୟ, ଅତ୍ୟାଚାର ଓ ଅରାଜକତା ବଢ଼ି ଚାଲିଥିଲା । ଲାଓସୀ ଦେଶବାସୀଙ୍କର ଏପରି ଦୁଃଖକଷ୍ଟ ଦେଖି ତାହାର ପ୍ରତିକାର ପାଇଁ ଗଭୀର ଚିନ୍ତା କରୁଥିଲେ । ଶେଷରେ ସେ ତାଙ୍କର ମତ ଘୋଷଣା କଲେ । ଦେଶବାସୀଙ୍କ ମଙ୍ଗଳ ନିମନ୍ତେ ଓ ସମାଜରୁ ଦୁଃଖ-ଦାରିଦ୍ର୍ୟ ଦୂର କରିବା ନିମନ୍ତେ ଶାସନତନ୍ତ୍ରର ଆମୂଳ ପରିବର୍ତ୍ତନ ହେବ ଆବଶ୍ୟକ ବୋଲି ସେ ବୁଝିଥିଲେ । ସେ ଦୃଢ଼ରୂପେ ପ୍ରଚାର କରୁଥିଲେ ଯେ, ରାଜତନ୍ତ୍ର ଶାସନ ପ୍ରଜାମାନଙ୍କ ପକ୍ଷରେ ମଙ୍ଗଳଜନକ ନୁହେଁ । ରାଜାଙ୍କଠାରୁ ଜନସାଧାରଣଙ୍କ ହାତକୁ ଦେଶର ଶାସନ-କ୍ଷମତା ଆସିଲେ ଦେଶରୁ ଅସମତା ଓ ଦୁଃଖଦାରିଦ୍ର ଦୂର ହେବ; କିନ୍ତୁ ସେକାଳରେ ଚୀନ୍-ଅଧିବାସୀମାନେ ଅତ୍ୟନ୍ତ ରାଜଭକ୍ତ ଥିବାରୁ ଲାଓସୀଙ୍କ ଉପଦେଶ ବିଶେଷ ଫଳପ୍ରଦ ହେଲା ନାହିଁ । ତଥାପି ଚୀନ-ଲୋକେ ଶାସନତନ୍ତ୍ରରେ କେତେକ ପରିବର୍ତ୍ତନ କରି



[ ଲାଓସୀ ]

ପାରୁଥିଲେ । ଶାସନତାନ୍ତ୍ରିକ ସଂସ୍କାର ଛଡ଼ା ସମାଜରେ ନୈତିକ ସଂସ୍କାର କରିବାପାଇଁ ଲଓସୀ ପ୍ରବଳ ଚେଷ୍ଟା କରୁଥିଲେ । ଲୋକମାନେ ଯେପରି ସଂଯମୀ, ନମ୍ର, ସରଳ, ନିର୍ଲୋଭ, ନିର୍ଭୀକ, କର୍ମଠ ଓ ନିଃସ୍ୱାର୍ଥପର ହେବେ, ସେଥିପାଇଁ ସେମାନଙ୍କୁ ବୁଝାଉଥିଲେ । ଏହି ନୀତିମୟ ଉପଦେଶାବଳୀ ଚୀନ୍‌ବାସୀଙ୍କ ଜୀବନରେ ବିଶେଷ ପ୍ରଭାବ ପକାଇଥିଲା । ଲଓସୀଙ୍କ ପ୍ରବର୍ତ୍ତିତ ଧର୍ମକୁ **'ଟାଓ'** ଧର୍ମ କୁହାଯାଏ ।

**କନ୍‌ଫୁସିୟୁସ୍‌**—ଉତ୍ତର ଚୀନ୍‌ର **'ଲୁ'** ପ୍ରଦେଶରେ **କନଫୁସିୟୁସ୍‌** ଖ୍ରୀଷ୍ଟପୂର୍ବ ୫୫୦ ଅବ୍ଦରେ ଜନ୍ମଗ୍ରହଣ କରିଥିଲେ । ଲଓସୀଙ୍କ ପରି ସେ ଉତ୍ତର-ଚୀନ୍‌ର ଲୋକମାନଙ୍କ ଦୁଃଖ ଦୁର୍ଦ୍ଦଶା ଦେଖି ଏହାର ପ୍ରତିକାର ପାଇଁ ଗଭୀର ଚିନ୍ତା କରୁଥିଲେ । ଲଓସୀଙ୍କ ପରି ତାଙ୍କର ସାଧାରଣ-ତନ୍ତ୍ର ଶାସନରେ ଆସ୍ଥା ଥିଲା । ସେ ବିଶ୍ୱାସ କରୁଥିଲେ ଯେ, ଶାସକ ଉତ୍ତମ ପ୍ରକୃତିର ଲୋକ ହେଲେ ଏବଂ ଉଚ୍ଚ ଆଦର୍ଶରେ ଅନୁପ୍ରାଣିତ



[ କନଫୁସିୟୁସ୍ ]

ହୋଇ ଜନସାଧାରଣଙ୍କ ମଙ୍ଗଳ କରିବାପାଇଁ ଚେଷ୍ଟା କଲେ ତଦ୍ଦ୍ୱାରା ଦେଶର ମଙ୍ଗଳ ହେବ । ସେ ନିଜେ ସୁବିଧା ପାଇଲେ କୌଣସି ସ୍ଥାନର ଶାସକ ହୋଇ ତାଙ୍କର ଉଚ୍ଚ ଆଦର୍ଶକୁ କାର୍ଯ୍ୟରେ ପରିଣତ କରିବାପାଇଁ ଇଚ୍ଛା କରୁଥିଲେ । ମାତ୍ର ଚୀନ୍ ଦେଶର କୌଣସି ଶାସକ ତାଙ୍କର ମତ ଗ୍ରହଣ କଲେ ନାହିଁ । ଶେଷରେ ତାଙ୍କ ନିଜ ରାଜ୍ୟ 'ଲୁ'ର ଶାସକ ତାଙ୍କୁ 'ଚୁଂଟୁ' ନାମକ ସହରର ଶାସନକର୍ତ୍ତାରୂପେ ନିଯୁକ୍ତ କଲେ । ଏହି ସୁଯୋଗ ପାଇ କନ୍‌ଫୁସିୟସ୍ 'ଚୁଂଟୁ'ର ଅଧିବାସୀଙ୍କ ପାଇଁ କେତେକ ଉତ୍ତମ ଆଇନ୍ ପ୍ରଣୟନ କରିଥିଲେ । ସମାଜର ମଙ୍ଗଳ କରିବାକୁ ହେଲେ ବ୍ୟକ୍ତିଗତ ଜୀବନ ଶୃଙ୍ଖଳିତ କରି ନିଜର କର୍ତ୍ତବ୍ୟ ସାଧନ କରିବାକୁ ଚେଷ୍ଟା କରିବା ଉଚିତ ବୋଲି ସେ କହୁଥିଲେ । ବ୍ୟକ୍ତିଗତ ଜୀବନର ଉନ୍ନତି ପାଇଁ ସେ ଲୋକଙ୍କର ଖାଇବା, ପିନ୍ଧିବା, ଦେଖିବା, ଶୁଣିବା ଇତ୍ୟାଦି ନାନାପ୍ରକାର ବିଷୟରେ ପରାମର୍ଶ ଦେଉଥିଲେ । ବିଭିନ୍ନ ଶ୍ରେଣୀର ଲୋକଙ୍କ ପ୍ରତି କପରି ବ୍ୟବହାର କରିବାକୁ ହେବ, ସେଥିପାଇଁ ସେ ଆଇନ୍ ପ୍ରଣୟନ କରିଥିଲେ । ଜନସାଧାରଣଙ୍କ ଚରିତ୍ରର ଉନ୍ନତି ସାଧନ ତାଙ୍କ ଜୀବନର ଲକ୍ଷ୍ୟ ଥିଲା । କନ୍‌ଫୁସିୟସ୍‌ଙ୍କ ଜୀବିତାବସ୍ଥାରେ ତାଙ୍କ ମତ, ନିୟମମାନ ଚୀନ୍ ଲୋକଙ୍କୁ ବିଶେଷରୂପେ ଅନୁପ୍ରାଣିତ କରି ପାରି ନ ଥିଲା; ମାତ୍ର ତାଙ୍କ ମୃତ୍ୟୁପରେ ତାଙ୍କ ମତଗୁଡ଼ିକ କ୍ରମେ ଜନପ୍ରିୟ ହେବାକୁ ଲାଗିଲା । ଲାଓସୀ ଓ କନ୍‌ଫୁସିୟସଙ୍କ ଧର୍ମମତ ପ୍ରବର୍ତ୍ତନ ଫଳରେ ଚୀନ୍‌ବାସୀଙ୍କ ମନରେ ଧର୍ମଭାବ ଜାଗ୍ରତ ହୋଇଥିଲା । ଏହା ଫଳରେ ଚୀନରେ ବୌଦ୍ଧଧର୍ମ ସହଜରେ ପ୍ରଚଳିତ ହୋଇ ପାରିଥିଲା ।

———

# ଅଷ୍ଟମ ଅଧ୍ୟାୟ

## ଗ୍ରୀସ୍‌ର ଗୌରବ ଓ ପ୍ରାଚ୍ୟ ପାଶ୍ଚାତ୍ୟର ମିଳନ

## ଆଲେକଜାଣ୍ଡର

**ଗ୍ରୀସ୍‌ର ଗୌରବ**—ପୂର୍ବରୁ ବର୍ଣ୍ଣିତ ହୋଇଅଛି ଯେ ଗ୍ରୀସ୍‌ର ଦୁଇ ପ୍ରଧାନ ରାଜ୍ୟ **ଏଥେନ୍‌ସ** ଓ **ସ୍ପାର୍ଟା** ମଧ୍ୟରେ ଅନ୍ତର୍ବିବାଦ ଓ ସଂଘର୍ଷ ଭୀଷଣ ଆକାର ଧାରଣ କରିଥିଲା ବେଳେ ଖ୍ରୀଷ୍ଟପୂର୍ବ ୪୬୭ ଅବ୍ଦରେ **ପେରିକ୍ଲସ୍‌** ନାମକ ଜଣେ ପ୍ରତିଭାଶାଳୀ ବୀର ଏଥେନ୍‌ସର ଶାସନ-ପରିଷଦରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲେ। ତାଙ୍କ ଶାସନ କାଳ ମଧ୍ୟରେ ଏଥେନ୍‌ସ ବିଭିନ୍ନ ଦିଗରେ ଉନ୍ନତିର ଚରମ ସୀମାରେ ପହଞ୍ଚିଥିଲା। ପେରିକ୍ଲସ୍‌ ଏକାଧାରରେ ଜଣେ ଯୋଦ୍ଧା, ସାହିତ୍ୟ-ପ୍ରେମୀ ଓ ଶିଳ୍ପାନୁରାଗୀ ଥିଲେ। ପାରସ୍ୟ ସମ୍ରାଟ୍ ଡେରାୟସ ଓ ଜାରେକ୍‌ସସ୍‌ଙ୍କ ଆକ୍ରମଣ ଫଳରେ ଏଥେନ୍‌ସ ନଗରୀ ଧ୍ୱସ୍ତ-ବିଧ୍ୱସ୍ତ ହୋଇଯାଇଥିଲା। ପେରିକ୍ଲସ୍‌ ତାହାକୁ ପୁନର୍ବାର ସୁନ୍ଦରରୂପେ



[ ପେରିକ୍ଲସ୍‌ ]

ଗଢ଼ିବାକୁ ଚେଷ୍ଟା କରିଥିଲେ। ଏଥେନ୍‌ସ ନଗରରାଜ୍ୟ **ଏକ୍ରୋପଲି**

ପାହାଡ଼ ଗୃହପଟେ ଖୋଦିତ ରହିଥିଲା । ପେରିକ୍ଲସ ସେହି ପାହାଡ଼ ଉପରେ ଏଥେନ୍ସର ଅଧିଷ୍ଠାତ୍ରୀ ଦେବୀ **ଏଥେନା**ଙ୍କ ସମ୍ମାନେ ମାର୍ବଲ ପଥରରେ ଏକ ବିରାଟ ମନ୍ଦିର ନିର୍ମାଣ କରିଥିଲେ । ତାହାକୁ **ପାର୍ଥେନନ** ମନ୍ଦିର କୁହାଯାଏ । ପାର୍ଥେନନ୍ ମନ୍ଦିରର ଭଗ୍ନାବଶେଷ ଏବେ ସୁଦ୍ଧା ଦେଖିବାକୁ ମିଳେ । ଅଧିଷ୍ଠାତ୍ରୀ ଦେବୀ ଏଥେନାଙ୍କ ମୂର୍ତ୍ତି ବ୍ରୋଞ୍ଜରେ ନିର୍ମିତ ହୋଇଥିଲା । ଏହାକୁ ଗ୍ରୀକ୍ ଶିଳ୍ପୀ **ଫିଡ଼ିୟାସ୍** ନିର୍ମାଣ କରିଥିଲେ । ପେରିକ୍ଲସଙ୍କ ଆଦେଶରେ ଏଥେନ୍ସର ଶିଳ୍ପୀମାନେ ଆହୁରି ଅନେକ ସୁନ୍ଦର ସୁନ୍ଦର ମନ୍ଦିର ଓ ମୂର୍ତ୍ତି ନିର୍ମାଣ କରିଥିଲେ । ଜିୟୁସ ଓ ଏପୋଲୋ ଆଦି ଦେବ-ଦେବୀଙ୍କ ସୁନ୍ଦର ମୂର୍ତ୍ତି ନିର୍ମିତ ହୋଇ ସେହି ଗଡ଼ ଉପରେ ସ୍ଥାପନ କରାଯାଇଥିଲା । ଏହାଛଡ଼ା ପେରିକ୍ଲସ, ସକ୍ରେଟିସ ଓ ଅନ୍ୟାନ୍ୟ ଦାର୍ଶନିକମାନଙ୍କର ପ୍ରତିମୂର୍ତ୍ତିମାନ ଜୀବନ୍ତ ସଦୃଶ ଗଢାଯାଇ ଏଥେନ୍ସର ବିଭିନ୍ନ ସ୍ଥାନରେ ରଖାଯାଇଥିଲା ।

ପେରିକ୍ଲସ୍‌ଙ୍କ ଅମଳରେ ସାହିତ୍ୟ, ଇତିହାସ ଓ ଦର୍ଶନର ଚରମ ଉନ୍ନତି ସାଧିତ ହୋଇଥିଲା । ପେରିକ୍ଲସ୍‌ଙ୍କ ସମୟକୁ ଗ୍ରୀକ୍ ବର୍ଣ୍ଣମାଳା ଉଦ୍ଭାବିତ ହୋଇସାରିଥିଲା । ତେଣୁ ତାଙ୍କ ସମୟରେ ଗ୍ରୀକ୍ ଭାଷାରେ ଅନେକ ଉପାଦେୟ ପୁସ୍ତକ ପ୍ରଣୀତ ହୋଇଥିଲା । ସେତେବେଳେ **ସୋଫୋକ୍ଲସ, ଏସ୍କାଇଲସ୍** ଓ **ଇଉରିପାଇଡସ୍** ପ୍ରଭୃତି ନାଟ୍ୟକାର ଓ ସାହିତ୍ୟିକମାନେ ନାଟକ ରଚନା କରି ଗ୍ରୀକ୍ ସାହିତ୍ୟକୁ ସମୃଦ୍ଧ କରିଥିଲେ । ଐତିହାସିକମାନଙ୍କ ମଧ୍ୟରେ **ହେରୋଡୋଟାସ୍** ଓ **ଥୁସିଡାଇଡ଼ସ** ପ୍ରଧାନ । ହେରୋଡୋଟାସ୍ ଗ୍ରୀସ୍ ଓ ପାରସ୍ୟ ମଧ୍ୟରେ ହୋଇଥିବା ଯୁଦ୍ଧ ବିଷୟ ତାଙ୍କ ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ତାଙ୍କ ଲେଖାରୁ ପାରସ୍ୟ ସାମ୍ରାଜ୍ୟ ଓ ଗ୍ରୀକ୍ ନଗର-

ରାଜ୍ୟମାନଙ୍କର ପ୍ରକୃତ ଇତିହାସ ଜଣାପଡ଼େ । ତେଣୁ ହେରୋଡୋଟାସ୍ ପୃଥିବୀର ପ୍ରଥମ ଐତିହାସିକ ଓ ଇତିହାସର ଜନ୍ମଦାତା ରୂପେ ସମ୍ମାନିତ ହୁଅନ୍ତି । ତାଙ୍କର ଅଳ୍ପକାଳ ପରେ ଥ୍ୟୁସିଡ଼ାଇଡ଼ସ୍ ନାମକ ଜଣେ ଗ୍ରୀକ୍ ଇତିହାସ ଲେଖାରେ ବିଶେଷ ପାରଦର୍ଶିତାଲାଭ କରିଥିଲେ । ସେହି ସମୟରେ ଗ୍ରୀସ୍‌ରେ ଜ୍ଞାନ ଓ ଦର୍ଶନର ବହୁଳ ଚର୍ଚ୍ଚା ହୋଇଥିଲା । **ସକ୍ରେଟିସ୍, ପ୍ଲେଟୋ** ଓ **ଆରିଷ୍ଟଟଲ୍** ଦାର୍ଶନିକ ହିସାବରେ ପୃଥିବୀରେ ଚିରସ୍ମରଣୀୟ ଅଟନ୍ତି । ଏବେ ମଧ୍ୟ ସେମାନଙ୍କ ପ୍ରଣୀତ ପୁସ୍ତକମାନଙ୍କରେ ଗ୍ରୀକ୍ ଦର୍ଶନ ଓ ଜ୍ଞାନର ଗଭୀର ତତ୍ତ୍ୱ ପାଠକରି ଲୋକେ ସେମାନଙ୍କ ଜ୍ଞାନର ପରିସର ବୃଦ୍ଧି-କରୁଛନ୍ତି । ସେକ୍ରେଟିସ୍ ଜ୍ଞାନ ଉମାମାଲୋକମାନଙ୍କ ର ଅଜ୍ଞତା ପ୍ରମାଣ କରୁଥିଲେ ଓ ମୂର୍ଖଲୋକମାନଙ୍କୁ ନାନା ତଥ୍ୟ ବୁଝାଉଥିଲେ । ସେ କହୁଥିଲେ ଯେ, କୌଣସି ଦେବଦେବୀ ମନୁଷ୍ୟର ଭାଗ୍ୟ ନିୟନ୍ତ୍ରଣ କରନ୍ତି ନାହିଁ । ମନୁଷ୍ୟ ନିଜେ ନିଜର ଭାଗ୍ୟ ଗଢ଼େ । ସକ୍ରେଟିସଙ୍କ ଏପରି ପ୍ରଚାରରେ ଏଥେନ୍ସର କ୍ଷମତାଶାଳୀ ଲୋକେ ବଡ଼ ଚଟିଗଲେ



[ ସକ୍ରେଟିସ୍ ]

ହୋଇପଡ଼ିଥିଲେ । ସେମାନେ ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ଅଭିଯୋଗ କଲେ ଯେ ସକ୍ରେଟିସ୍ ଏଥେନ୍‌ସର ଯୁବକମାନଙ୍କୁ ପ୍ରତିଷ୍ଠିତ ଧର୍ମ-ବିରୁଦ୍ଧରେ କୁଶିକ୍ଷା ଦେଉଛନ୍ତି । ମାତ୍ର ପେରିକ୍ଲିସ୍ ବଞ୍ଚିଥିବା ପର୍ଯ୍ୟନ୍ତ ସକ୍ରେଟିସ୍‌ଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ଆଣିବାକୁ କେହି ସାହସ କରି ନଥିଲେ । ତାଙ୍କ ମୃତ୍ୟୁ ପରେ ଏଥେନସ ଓ ସ୍ପାର୍ଟା ମଧ୍ୟରେ ଯୁଦ୍ଧ ଲାଗି ଏଥେନସର ପରାଜୟ ହେଲା । ଏହି ସୁଯୋଗରେ ସକ୍ରେଟିସ୍‌ଙ୍କ ଶତ୍ରୁମାନେ ପ୍ରଚାରି କଲେ ଯେ, ସକ୍ରେଟିସ୍‌ଙ୍କ ମତପ୍ରଚାର ଏଥେନ୍‌ସର ପରାଜୟର କାରଣ ହେଲା । ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ଅଣାଯାଇଥିବା ଅଭିଯୋଗର ବିଚାର ହେଲା ଓ ସକ୍ରେଟିସ୍ ପ୍ରାଣଦଣ୍ଡରେ ଦଣ୍ଡିତ ହେଲେ । ସକ୍ରେଟିସ୍ ହସି ହସି ବିଷ ପାନକରି ମୃତ୍ୟୁ ବରଣ କଲେ । ସକ୍ରେଟିସ୍‌ଙ୍କ ପରେ ପ୍ଲେଟୋ ରାଜନୀତି ଓ ତର୍କଶାସ୍ତ୍ରରେ ଗବେଷଣା କରି ବହୁ ତଥ୍ୟ ଆବିଷ୍କାର କରିଥିଲେ । ପ୍ଲେଟୋଙ୍କ ପରେ ଆରିଷ୍ଟଟଲ ତର୍କ ବିଦ୍ୟାର ପ୍ରଭୂତ ଉନ୍ନତି ସାଧନ କରିଥିଲେ ।

ଆରିଷ୍ଟଟଲ୍ ଜଣେ ଅସାଧାରଣ ପଣ୍ଡିତ ଥିଲେ । ମାସିଡ଼ନ୍‌ର ରାଜା ଫିଲିପ୍ ଆରିଷ୍ଟଟଲ୍‌ଙ୍କ ଉପରେ ତାଙ୍କ ପୁତ୍ର ଆଲେକ୍‌ଜାଣ୍ଡରଙ୍କ ଶିକ୍ଷାଭାର ନ୍ୟସ୍ତ କରିଥିଲେ । ଆଲେକ୍‌ଜାଣ୍ଡର ତାଙ୍କଠାରୁ ଉପଯୁକ୍ତ ଶିକ୍ଷା ଲାଭକରି ତାଙ୍କର ମହତ୍ତ୍ୱଗୁଣରେ ବହୁ ପରିମାଣରେ ଅନୁପ୍ରାଣିତ ହୋଇଥିଲେ । ପ୍ରାଚୀନ ଗ୍ରୀସ୍‌ରେ ଗଣିତ, ଜ୍ୟୋତିର୍ବିଦ୍ୟା ଓ ଜ୍ୟାମିତି ଶାସ୍ତ୍ରର ମଧ୍ୟ ଉନ୍ନତି ସାଧିତ ହୋଇଥିଲା । ପିଥାଗୋରସ ଗଣିତ ବିଦ୍ୟାରେ, ଏନାକ୍‌ସାଗୋରାସ୍ ଜ୍ୟୋତିର୍ବିଦ୍ୟାରେ ପ୍ରସିଦ୍ଧି ଲାଭ କରିଥିଲେ । ପେରିକ୍ଲିସଙ୍କ ସମୟରେ ଜ୍ୟାମିତି ଓ ଚିକିତ୍ସା-ଶାସ୍ତ୍ରର ମଧ୍ୟ ଉନ୍ନତି ଘଟିଥିଲା । ଏହିପରି ସାହିତ୍ୟ, ଦର୍ଶନ, ଇତିହାସ, କଳା ଓ

ସ୍ଥାପତ୍ୟ ଏବଂ ବିଜ୍ଞାନର ପ୍ରାଚୀନ ଗ୍ରୀସ୍‌ରେ ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ତେଣୁ ପେରିକ୍ଲିସ୍‌ଙ୍କ ଶାସନ କାଳକୁ ଗ୍ରୀକ୍ ଇତିହାସର **ସୁବର୍ଣ୍ଣଯୁଗ** ବୋଲି କୁହାଯାଏ ।

## ଆଲେକ୍‌ଜାଣ୍ଡର ଓ ତାଙ୍କର ଦିଗ୍‌ବିଜୟ

ପେରିକ୍ଲିସ୍‌ଙ୍କ ମୃତ୍ୟୁପରେ ଗ୍ରୀସ୍ ନଗର-ରାଜ୍ୟମାନଙ୍କ ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ଅନ୍ତର୍ଦ୍ୱନ୍ଦ୍ୱ ଲାଗି ରହିଥିଲା । ଗ୍ରୀସ୍‌ର ଉତ୍ତର ଭାଗରେ ଥିବା କ୍ଷୁଦ୍ର ମାସିଡ଼ନ୍ ରାଜ୍ୟର ରାଜା ଫିଲିପ୍ କ୍ଷମତାଶାଳୀ ହୋଇ ଖ୍ରୀଷ୍ଟପୂର୍ବ ୩୩୮ଅବ୍ଦ ବେଳକୁ ସମୁଦାୟ ଗ୍ରୀକ୍ ଉପରେ ଆଧିପତ୍ୟ ବିସ୍ତାର କରିଥିଲେ । ଏସିଆ ମହାଦେଶର ସମସ୍ତ ଅଞ୍ଚଳ ଜୟକରି ବିଶ୍ୱବିଜୟୀ ହେବା ନିମନ୍ତେ ସେ ଅଭିଳାଷ ପୋଷଣ କରିଥିଲେ । ସେଥିପାଇଁ ସେ ଏକ ସୁଶିକ୍ଷିତ ବିରାଟ ସୈନ୍ୟବାହିନୀ ଗଠନକରି ଯୁଦ୍ଧ ଅଭିଯାନର ଆୟୋଜନ କରୁଥିଲେ । କିନ୍ତୁ ହଠାତ୍ ତାଙ୍କର ମୃତ୍ୟୁହେଲା । ଫିଲିପ୍‌ଙ୍କ ମୃତ୍ୟୁ ପରେ ଆଲେକ୍‌ଜାଣ୍ଡର ମାସିଡ଼ନ୍‌ର ସିଂହାସନାରୋହଣ କରି ପିତାଙ୍କ ଆଶା ପୂରଣ



[ ଆଲେକ୍‌ଜାଣ୍ଡର ]

କରିବା ନିମନ୍ତେ ପୃଥିବୀ ଜୟ କଳ୍ପନାରେ ଦିଗ୍‌ବିଜୟରେ ଖ୍ରୀଷ୍ଟପୂର୍ବ ୩୩୪ ଅବ୍ଦରେ ବାହାରିଲେ । ସେ ପ୍ରଥମେ ପାରସ୍ୟ ଅଭିମୁଖେ ଯୁଦ୍ଧଯାତ୍ରା ଚଳାଇଲେ । ସେ ପାରସ୍ୟର ସୈନ୍ୟମାନଙ୍କୁ ଦୁଇଟି ଯୁଦ୍ଧରେ ପରାସ୍ତ କରି ପାରସ୍ୟର ନୌଶକ୍ତି ଧ୍ୱଂସ କରିଥିଲେ ଓ ଭୂମଧ୍ୟସାଗର ଉପକୂଳବର୍ତ୍ତୀ ବନ୍ଦର ଏବଂ **ଟାୟାର, ଗାଜା** ଆଦି ପ୍ରାଚୀନ ନଗରମାନ ପୋଡ଼ି ଧ୍ୱଂସ କରିଥିଲେ । ଏହାପରେ ମିଶର ଜୟକରି ନିଜର ନାମାନୁସାରେ ମିଶରରେ ଆଲେକ୍‌ଜାଣ୍ଡ୍ରିଆ ଓ ଆଲେକ୍‌ଜାଣ୍ଡ୍ରେଟା ସହରମାନ ସ୍ଥାପନ କରିଥିଲେ । ଆଲେକ୍‌ଜାଣ୍ଡରଙ୍କ ଗତିରୋଧ କରିବାପାଇଁ ପାରସ୍ୟର ସମ୍ରାଟ୍ ତୃତୀୟ ଡେରିୟସ ଏକ ବିଶାଳ ସେନା ସହ ତାଙ୍କ ସମ୍ମୁଖୀନ ହେଲେ । ନିନେଭେ ନଗରୀ ନିକଟରେ **ଆର୍ବେଲା** ଯୁଦ୍ଧକ୍ଷେତ୍ରରେ ଖ୍ରୀଷ୍ଟପୂର୍ବ ୩୩୧ ଅବ୍ଦରେ ଗ୍ରୀକ୍ ଓ ପାରସିକସୈନ୍ୟମାନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ଆଲେକ୍‌ଜାଣ୍ଡର ଜୟଯୁକ୍ତ ହେଲେ । ପାରସିକମାନେ ବହୁଥର ଗ୍ରୀସ ଆକ୍ରମଣ କରି ଗ୍ରୀସର ଅନେକ କୀର୍ତ୍ତି ଧ୍ୱଂସ କରି ଦେଇଥିବାରୁ ଗ୍ରୀକ୍‌ବୀରମାନେ ପ୍ରତିଶୋଧ ନେବାପାଇଁ ପାରସ୍ୟର ରାଜଧାନୀ **ସୁସା** ମଧ୍ୟରେ ପ୍ରବେଶ କରି ଡେରିୟସଙ୍କ ବିଶାଳ ରାଜପ୍ରାସାଦକୁ ପୋଡ଼ି ଧ୍ୱଂସ କରିଦେଲେ । ଆଲେକ୍‌ଜାଣ୍ଡର ବେବିଲୋନ୍, ସୁସା ଓ ପର୍ସିପୋଲିସ ପ୍ରଭୃତି ଅଧିକାର କରି ସମଗ୍ର ପାରସ୍ୟର ଅଧୀଶ୍ୱର ହେଲେ ।

ତତ୍‌ପରେ ଆଲେକ୍‌ଜାଣ୍ଡର ଭାରତ ଅଭିମୁଖରେ ଅଭିଯାନ ଚଳାଇଲେ । ରାସ୍ତାରେ ସେ ତୁର୍କୀସ୍ଥାନ, ହିରାଟ, କାବୁଲ ପ୍ରଭୃତି ଅନାୟାସରେ ଅଧିକାର କରି ପାରିଥିଲେ । ଗ୍ରୀକ୍ ସୈନ୍ୟମାନେ ଖାଇବର ଗିରିପଥ ଅତିକ୍ରମ କରି ଖ୍ରୀଷ୍ଟପୂର୍ବ ୩୨୭ ଅବ୍ଦରେ ଭାରତରେ ପ୍ରବେଶ କରିଥିଲେ । ସେ ଭାରତରେ

ସିନ୍ଧୁ ପର୍ଯ୍ୟନ୍ତ ରାଜ୍ୟ ଜୟକରି ଫେରି ଆସିଥିଲେ । ଅଳ୍ପକାଳ ପରେ ଖ୍ରୀଷ୍ଟପୂର୍ବ ୩୨୩ ଅବ୍ଦରେ ସେ ବେବିଲୋନଠାରେ ଜ୍ୱର ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କରିଥିଲେ ।

**ପ୍ରାଚ୍ୟ ଓ ପାଶ୍ଚାତ୍ୟର ସାଂସ୍କୃତିକ ମିଳନ—** ଆଲେକ୍‌ଜାଣ୍ଡରଙ୍କର ଆକ୍ରମଣ ଫଳରେ ମିଶର, ମେସୋପଟାମିଆ ଓ ଇରାନରେ ଅନେକ ପ୍ରାଚୀନ କୀର୍ତ୍ତି ଓ ସୁନ୍ଦର ନଗର




ଧ୍ୱଂସ ହୋଇ ଯାଇଥିଲା । ପ୍ରାଚୀନ ସଭ୍ୟତାର ନିଦର୍ଶନ ସ୍ୱରୂପ ବିରାଜିତ ସହରମାନ, ଯଥା—ଟାୟାର, ଗାଜା, ନିନେଭେ, ବେବିଲୋନ, ସୁସା, ପାର୍ସିପୋଲିସ ପ୍ରଭୃତି ଗ୍ରୀକ୍ ସୈନ୍ୟଙ୍କ ଆକ୍ରମଣରେ ଶ୍ରୀହୀନ ହୋଇ ପଡ଼ିଥିଲା । ତଥାପି ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ଏକ ନୂତନ ଭାବଧାରା ଓ ନୂତନ ସଭ୍ୟତା ସୃଷ୍ଟି କରି ପାରିଥିଲେ ।

ଆଲେକ୍‌ଜାଣ୍ଡରଙ୍କ ସାମରିକ ଅଭିଯାନ ସଙ୍ଗେ ସଙ୍ଗେ ସାଂସ୍କୃତିକ ଅଭିଯାନ ମଧ୍ୟ ଚାଲିଥିଲା । ତାଙ୍କ ସେନାବାହିନୀରେ ବହୁ ଗ୍ରୀକ୍ ପଣ୍ଡିତ ଓ ଦାର୍ଶନିକ ଯୋଗଦେଇ ଏସିଆର ବିଭିନ୍ନ ଦେଶକୁ ଯାଇଥିଲେ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ସଦ୍‌ଭାବ ଓ ସାଂସ୍କୃତିକ ମିଳନ ସ୍ଥାପନ କରିବା ଆଲେକ୍‌ଜାଣ୍ଡରଙ୍କ ପ୍ରଧାନ ଲକ୍ଷ୍ୟ ଥିଲା । ସେ ବିଜିତ ରାଜ୍ୟ, ଯଥା ପାରସ୍ୟ, ଆଫଗାନିସ୍ଥାନ ଓ ଭାରତର ବିଭିନ୍ନ ଅଞ୍ଚଳରେ ଗ୍ରୀକ୍ ନଗରମାନ ସ୍ଥାପନ କରି ସେଥିରେ ଗ୍ରୀକ୍‌ମାନଙ୍କର ବସତିସ୍ଥାପନ କରିଥିଲେ । ଆଲେକ୍‌ଜାଣ୍ଡର ନିଜେ ପାରସ୍ୟ ସମ୍ରାଟଙ୍କ କନ୍ୟାକୁ ବିବାହ କରିଥିଲେ ଓ ଅନ୍ୟାନ୍ୟ ଗ୍ରୀକ୍‌ମାନଙ୍କୁ ପ୍ରାଚ୍ୟର ନାରୀ ବିବାହ କରିବାକୁ ପ୍ରବର୍ତ୍ତାଇ ଥିଲେ । ଏହିପରି ବୈବାହିକ ସମ୍ବନ୍ଧ ସ୍ଥାପନ କରିବା ଦ୍ୱାରା ପ୍ରାଚ୍ୟ ଓ ପାଶ୍ଚାତ୍ୟର ଲୋକମାନଙ୍କ ମଧ୍ୟରେ ଭେଦଭାବ ଦୂର ହୋଇଯିବ ବୋଲି ସେ ଭାବିଥିଲେ । ଏସିଆର ବିଭିନ୍ନ ଅଞ୍ଚଳରେ ଗ୍ରୀସ୍ ଉପନିବେଶ ସ୍ଥାପିତ ହେବାଦ୍ୱାରା ଗ୍ରୀକ୍ ସାହିତ୍ୟ ଓ କଳାର ପ୍ରସାର ଘଟିଥିଲା । ଆଲେକ୍‌ଜାଣ୍ଡରଙ୍କ ଦ୍ୱାରା ସ୍ଥାପିତ ଆଲେକ୍‌ଜାଣ୍ଡ୍ରିଆ ସହର ବହୁଦିନ ପର୍ଯ୍ୟନ୍ତ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଶିକ୍ଷାକେନ୍ଦ୍ର ହୋଇଥିଲା । ଗ୍ରୀକ୍ ଶାସକ ଟଲେମି ଏହି ସହରରେ ଗୋଟିଏ ବିଶ୍ୱବିଦ୍ୟାଳୟ ଓ ବିରାଟ ପୁସ୍ତକାଗାର ସ୍ଥାପନ କରିଥିଲେ । ଏହି ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟରେ ଇଉକ୍ଲିଡ୍, ଏରାଟୋସ୍ଥେନିସ ଓ ଆର୍କିମେଡ଼ିସ୍ ପ୍ରଭୃତି ବିଦ୍ୱାନ ଲୋକମାନେ ବିଭିନ୍ନ ବିଷୟରେ ଗବେଷଣା କରି ପୃଥିବୀକୁ ନୂତନ ଜ୍ଞାନ ଦାନ କରିଥିଲେ । ଟଲେମି ହିବ୍ରୁମାନଙ୍କର ବାଇବେଲ ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥମାନ ଗ୍ରୀକ୍ ଭାଷାରେ ଅନୁବାଦ କରାଇଥିଲେ ଏବଂ ଗ୍ରୀକ୍ କବି ହୋମରଙ୍କର ରଚିତ ଇଲିୟାଡ଼ ଓ ଓଡିଶି କାବ୍ୟର

ଟୀକା ଲେଖିଥିଲେ । **ଇଉକ୍ଲିଡ୍** ଜ୍ୟାମିତି ବିଷୟରେ, **ଆର୍କିମେଡ଼ିସ** ବିଜ୍ଞାନ ବିଷୟରେ ଓ **ହିପାର୍କସ** ଜ୍ୟୋତିଷ ବିଷୟରେ ବହୁ ଗବେଷଣା କରିଥିଲେ । ଗ୍ରୀକ୍‌ମାନେ ସେତେବେଳେ ଏତେଦୂର ଅଗ୍ରସର ହୋଇଥିଲେ ଯେ ହେରୋ ପ୍ରଥମ ବାଷ୍ପୀୟ ଯନ୍ତ୍ର ଉଦ୍ଭାବନ କରିପାରିଥିଲେ ଓ ଏରାଟୋସ୍ଥେନିସ୍ ପୃଥିବୀର ପରିଧି ଏବଂ ବ୍ୟାସର ଦୈର୍ଘ୍ୟ ନିର୍ଣ୍ଣୟ କରି ପାରିଥିଲେ ।

ଆଲେକ୍‌ଜାଣ୍ଡରଙ୍କ ପଞ୍ଜାବ ବିଜୟ ପରେ ଭାରତ ଏବଂ ଗ୍ରୀସ୍‌ମଧ୍ୟରେ ସ୍ଥଳପଥରେ ଓ ଜଳପଥରେ ସମ୍ପର୍କ ପ୍ରତିଷ୍ଠିତ ହେଲା । ଏସିଆଖଣ୍ଡର ଗ୍ରୀକ୍ ଶାସକ ସେଲ୍ୟୁକସ ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ଦରବାରକୁ ଗ୍ରୀକ୍ ରାଜଦୂତ ମେଗାସ୍ଥିନିସଙ୍କୁ ପଠାଇଥିଲେ ଏବଂ ଚନ୍ଦ୍ରଗୁପ୍ତ ମଧ୍ୟ ଗ୍ରୀକ୍ ରାଜକନ୍ୟାଙ୍କୁ ବିବାହ କରିଥିଲେ । ଭାରତୀୟମାନଙ୍କ ସମ୍ପର୍କରେ ଆସିବା ଦ୍ୱାରା ଗ୍ରୀକ୍‌ମାନେ ଦର୍ଶନ, ବିଜ୍ଞାନ ଓ ଆୟୁର୍ବେଦ ଚିକିତ୍ସା ସମ୍ବନ୍ଧରେ ଶିକ୍ଷା କରିବା ସୁଯୋଗ ପାଇଥିଲେ । ଅନ୍ୟ ପକ୍ଷରେ ଭାରତୀୟ ଶିଳ୍ପ, ସ୍ଥାପତ୍ୟ, ନାଟ୍ୟକଳା ଓ ଜ୍ୟୋତିଷବିଦ୍ୟା ଇତ୍ୟାଦିରେ ଗ୍ରୀକ୍ ପ୍ରଭାବ ପଡ଼ିଥିଲା । ଏହିପରି ଆଲେକ୍‌ଜାଣ୍ଡରଙ୍କ ଦିଗ୍‌ବିଜୟ ଫଳରେ ପ୍ରାଚ୍ୟ ପାଶ୍ଚାତ୍ୟ ଉଭୟ ଅଞ୍ଚଳର ଲୋକେ ପରସ୍ପର ସଭ୍ୟତା ଓ ସଂସ୍କୃତିରେ ଅନୁପ୍ରାଣିତ ହୋଇ ଉନ୍ନତି କରିବାର ସୁଯୋଗ ପାଇଥିଲେ ।



# ନବମ ଅଧ୍ୟାୟ

## ଫିନସୀୟ ଜାତି

ଖ୍ରୀଷ୍ଟପୂର୍ବ ପ୍ରାୟ ୨୦୦୦ ଅବ୍ଦରେ ଆରବ ଅଞ୍ଚଳରେ ଏକ ସେମିଟିକ ଯାଯାବର ଦଳ ଭୂମଧ୍ୟସାଗର ପୂର୍ବୋପକୂଳକୁ ଯାଇ ସେଠାରେ ବସତି ସ୍ଥାପନ କଲେ । ସେମାନେ ବାସ କରୁଥିବା କ୍ଷୁଦ୍ର ରାଜ୍ୟଟିର ନାମ ଥିଲା ଫିନିସିଆ । ଏହି ସଙ୍କୀର୍ଣ୍ଣ ରାଜ୍ୟର କେତେକାଂଶ ଉର୍ବର ଓ ଅଧିକାଂଶ ପର୍ବତମୟ । ଉର୍ବର ଉପତ୍ୟକାରେ ଫିନସୀୟମାନେ କୃଷିକାର୍ଯ୍ୟ ଦ୍ୱାରା ଜୀବିକା ନିର୍ବାହ କରୁଥିଲେ । କାଳକ୍ରମେ ସେମାନେ ନୌକାରେ ସମୁଦ୍ର କୂଳେ କୂଳେ ଯାଇ ବିଭିନ୍ନ ସ୍ଥାନରେ ବାଣିଜ୍ୟ କରିବାକୁ ଲାଗିଲେ ।



[ ଫିନସୀୟ ବାଣିଜ୍ୟ ତରୀ ]

ଏହା ସେମାନଙ୍କ ପକ୍ଷରେ ସୁବିଧାଜନକ ହୋଇଥିଲା । କାରଣ ସେମାନେ ଏଥିପୂର୍ବରୁ ନୌକା ତିଆରି କରି ନୌକା ସାହାଯ୍ୟରେ ସମୁଦ୍ରରେ ମାଛ ଧରୁଥିଲେ । ମାଛଧରା ନୌକାଗୁଡ଼ିକ ବାଣିଜ୍ୟ-

ତଗରେ ପରିଣତ ହେଲା । ଏହି ନୌକାଗୁଡ଼ିକ କ୍ଷୁଦ୍ର ଓ ଗୋଲାକାର ଥିଲା । କ୍ରମେ ସେମାନେ ବଡ଼ ବଡ଼ ପୋତମାନ ତିଆରି କରି ଦୂରବର୍ତ୍ତୀ ସ୍ଥାନମାନଙ୍କ ସହ ବାଣିଜ୍ୟ ଚଳାଇଲେ । ସେମାନଙ୍କ ବାସସ୍ଥଳୀ ଫିନିସୀୟାର ପଶ୍ଚିମସ୍ଥ ଲେବାନନ୍ ପର୍ବତମାଳାରୁ ସେମାନେ ବଡ଼ ବଡ଼ କାଠ ଆଣି ସେଥିରେ ବଡ଼ ବଡ଼ ଜାହାଜ ତିଆରି କରୁଥିଲେ ।

ଫିନିସୀୟମାନେ ଭୂମଧ୍ୟସାଗରର ପୂର୍ବୋପକୂଳରେ ବସତି ସ୍ଥାପନ କରି କେତେଗୁଡ଼ିଏ ନଗର ନିର୍ମାଣ କରିଥିଲେ । ନଗର-ମାନଙ୍କ ମଧ୍ୟରେ ଟାୟାର ଓ ସିଡ଼ନ ନଗର ଦ୍ୱୟ ପ୍ରଧାନ ଥିଲା ଓ ଅନ୍ୟଗୁଡ଼ିକ ଆୟତନରେ କ୍ଷୁଦ୍ର ଥିଲା । ଏହି ନଗର ଦୁଇଟି ସେ କାଳରେ ସାମୁଦ୍ରିକ ବାଣିଜ୍ୟର କେନ୍ଦ୍ର ଥିଲା । ସେମାନେ ଆଫ୍ରିକାର ଉତ୍ତର ଉପକୂଳରେ କାର୍ଥେଜ ନାମକ ସ୍ଥାନରେ ଏକ ଉପନିବେଶ ସ୍ଥାପନ କରିଥିଲେ । କାଳକ୍ରମେ ଏହା କାର୍ଥେଜ ସାମ୍ରାଜ୍ୟର କେନ୍ଦ୍ରସ୍ଥଳରେ ପରିଣତ ହୋଇଥିଲା ।

ଫିନିସୀୟମାନେ ଭୂମଧ୍ୟସାଗର ଚତୁର୍ଦ୍ଦିଗସ୍ଥ ଉପକୂଳରେ ଏବଂ ଜିବ୍ରାଲ୍‌ଟର ପ୍ରଣାଳୀ ଅତିକ୍ରମ କରି ଆଟ୍‌ଲାଣ୍ଟିକ ମହାସାଗର ଉପକୂଳ ଅଞ୍ଚଳରେ ବାଣିଜ୍ୟ ବ୍ୟବସାୟ ଚଳାଇଥିଲେ । ସେମାନେ ବାଣିଜ୍ୟ କରି ସ୍ପେନରୁ ପ୍ରଚୁର ରୂପା, ସାଇପ୍ରସ୍ ଦ୍ୱୀପରୁ ପ୍ରଚୁର ତମ୍ବା, ଆଫ୍ରିକାରୁ ବାଘ, ସିଂହ ପ୍ରଭୃତିର ଚମଡ଼ା ଓ ମିଶରରୁ ସୂକ୍ଷ୍ମ ବସ୍ତ୍ର ଆଣୁଥିଲେ । ସେମାନେ ସୁଦୂର ଗ୍ରେଟ୍‌ବ୍ରିଟେନର କର୍ଣ୍ଣୱାଲରୁ ଟିଣ ଆମଦାନି କରୁଥିଲେ । ପ୍ରାଚ୍ୟ ଦେଶମାନଙ୍କ ସହିତ ମଧ୍ୟ ସେମାନଙ୍କ ବାଣିଜ୍ୟ କାରବାର ଚଳୁଥିଲା । ସେମାନେ ପ୍ରାଚ୍ୟ ଦେଶମାନଙ୍କରୁ ମସଲା, ସୁଗନ୍ଧ ଦ୍ରବ୍ୟ ଓ

ବହୁମୂଲ୍ୟ ପଥର, ମୁକ୍ତା, ପ୍ରବାଳ ପ୍ରଭୃତି ଆଣି ଅନ୍ୟ ଦେଶରେ ରପ୍ତାନି କରୁଥିଲେ । ସିଡନ ଓ ଟାୟାରର କାରିଗରମାନଙ୍କ ଦ୍ୱାରା ପ୍ରସ୍ତୁତ ସୂକ୍ଷ୍ମବସ୍ତ୍ର, କଂସା ଓ କାଚର ନାନା ପ୍ରକାର ଜିନିଷ ଏବଂ ମଣିଖଚିତ ଅଳଙ୍କାର ବହୁସ୍ଥାନରେ ଆଦୃତ ହେଉଥିଲା ।

ବ୍ୟବସାୟରେ ଶୃଙ୍ଖଳା ରକ୍ଷା ନିମନ୍ତେ ସେମାନେ ଓଜନ ପରିମାଣରେ ଉନ୍ନତି କରିଥିଲେ । ହିସାବ ପତ୍ର ଠିକ୍ ଭାବରେ ରଖିବା ପାଇଁ ସେମାନେ ଚିତ୍ରଲିପି ବ୍ୟବହାର କରୁଥିଲେ । ମାତ୍ର ତାହାଦ୍ୱାରା କାମ ଠିକ୍ ଭାବରେ ଚଳିପାରୁ ନ ଥିଲା । ତେଣୁ ସେମାନେ ବର୍ଣ୍ଣମାଳାର ଉଦ୍ଭାବନ କଲେ ଓ ତାହା ସାହାଯ୍ୟରେ ହିସାବପତ୍ର ଲେଖି ରଖିଲେ । ଆଧୁନିକ ଯୁଗରେ ୟୁରୋପର ବିଭିନ୍ନ ଦେଶରେ ପ୍ରଚଳିତ ବର୍ଣ୍ଣମାଳା ଫିନିସୀୟ ଗ୍ରୀକ୍ ବା ଲାଟିନ ବର୍ଣ୍ଣମାଳାର ଅବଲମ୍ବନରେ ଗଠିତ ହୋଇଅଛି ।

ଫିନିସୀୟମାନେ ବିଭିନ୍ନ ଦେଶର ପଣ୍ୟଦ୍ରବ୍ୟ ନାନା ଦେଶରେ ରପ୍ତାନି କରିବା ମାଧ୍ୟମରେ ବିଭିନ୍ନ ଦେଶ ସଭ୍ୟତାର ସମନ୍ୱୟ ସାଧନ କରିଥିଲେ । ସେମାନଙ୍କ ଦ୍ୱାରା ମିଶର ଓ ମେସୋପଟାମିଆର ପ୍ରାଚୀନ ସଭ୍ୟତା ୟୁରୋପ ଓ ଆଫ୍ରିକାର ବିଭିନ୍ନ ଅଞ୍ଚଳରେ ପ୍ରସାରିତ ହୋଇଥିଲା । ସେମାନେ ମିଶର ସଭ୍ୟତାର ଚିତ୍ରଲିପିକୁ କେତେକାଂଶରେ ପରିବର୍ତ୍ତନ କରି ଖ୍ରୀ. ପୂ. ୯୦୦ ଅବ୍ଦ ବେଳକୁ ଏକ ପ୍ରକାର ନୂତନ ଲିପିମାଳା ଠିକ୍ କରିଥିଲେ । ପ୍ରାଚୀନ ଗ୍ରୀସର ଲୋକେ ଫିନିସୀୟମାନଙ୍କଠାରୁ ସେହି ଲିପି ଶିକ୍ଷା କରିଥିଲେ । ପରବର୍ତ୍ତୀ କାଳରେ ରୋମାନ୍‌ମାନେ ଗ୍ରୀକମାନଙ୍କଠାରୁ ସେହି ଲିପିକୁ ନେଇ ସେଥିରେ କେତେକ ପରିବର୍ତ୍ତନ କରି ନୂତନ ରୋମାନ୍ ଲିପି ସୃଷ୍ଟି କରିଥିଲେ ।

ରୋମାନ୍ ଲିପିରୁ କ୍ରମ ପୂର୍ବଗପର ଅନ୍ୟାନ୍ୟ ଲିପିମାନ ସୃଷ୍ଟି-ହେଲା । ମାନବ ସଭ୍ୟତାକୁ ଫିନିସୀୟମାନଙ୍କର ଏହା ଏକ ଅମୂଲ୍ୟ ଦାନ ।

**ଫିନିସୀୟମାନଙ୍କର କାର୍ଥେଜ ସାମ୍ରାଜ୍ୟ**—ଫିନି-ସୀୟମାନେ ଖ୍ରୀଷ୍ଟପୂର୍ବ ୨୭୧ ଅବ୍ଦ ବେଳକୁ ଆଫ୍ରିକାର ଉତ୍ତର ଉପକୂଳ ସ୍ପେନ୍, ସାର୍ଡିନିଆ, କର୍ସିକା ଓ ସିସିଲିକୁ ନେଇ କାର୍ଥେଜ ସାମ୍ରାଜ୍ୟ ଗଠନ କରିଥିଲେ । ମାତ୍ର ଖ୍ରୀଷ୍ଟପୂର୍ବ ୨୬୪ ଅବ୍ଦରୁ ଖ୍ରୀଷ୍ଟପୂର୍ବ ୧୪୬ ଅବ୍ଦ ପର୍ଯ୍ୟନ୍ତ ପ୍ରାୟ ଶତାଧିକ ବର୍ଷ କାଳ ରୋମାନ୍ ଓ କାର୍ଥେଜ୍‌ମାନଙ୍କର ଯୁଦ୍ଧ ଲାଗିଥିଲା । ଏହାକୁ **ପିଉନିକ୍** ଯୁଦ୍ଧ କହନ୍ତି । ଶେଷ ପିଉନିକ୍ ଯୁଦ୍ଧରେ କାର୍ଥେଜ ରାଜା ହାନିବେଲ୍ ପରାସ୍ତ ହେଲେ ଓ କାର୍ଥେଜ୍ ସାମ୍ରାଜ୍ୟ ଧ୍ୱଂସ ହେଲା । କାର୍ଥେଜ ସାମ୍ରାଜ୍ୟ ଚିରଦିନପାଇଁ ଲୋପ ପାଇଥିଲେ ମଧ୍ୟ ଫିନିସୀୟମାନେ ପ୍ରାଚୀନ କାଳରେ ଶ୍ରେଷ୍ଠ ନାବିକ ରୂପେ ଏବଂ ସଭ୍ୟତାର ବାହକରୂପେ ପୃଥିବୀ ଇତିହାସରେ ପ୍ରଂଶଂସନୀୟ ସ୍ଥାନ ଅଧିକାର କରିଛନ୍ତି ।

---

## ଦଶମ ଅଧ୍ୟାୟ
## ଯୀଶୁ ଓ ଖ୍ରୀଷ୍ଟଧର୍ମ

ପାଲେଷ୍ଟାଇନ୍ ଅନ୍ତର୍ଗତ ଜୁଡ଼ା ରାଜ୍ୟର ଜେରୁଜେଲମ ନିକଟବର୍ତ୍ତୀ ବାଥେଲହାମ୍ ଗ୍ରାମରେ ହିବ୍ରୁ ବା ଇହୁଦୀ କୁଳରେ ଯୀଶୁ ଜନ୍ମଗ୍ରହଣ କରିଥିଲେ । ତାଙ୍କ ସମୟରୁ ଖ୍ରୀଷ୍ଟାବ୍ଦ ଗଣା-ଯାଉଅଛି । ତାଙ୍କ ପୂର୍ବବର୍ତ୍ତୀ ସମୟକୁ ଖ୍ରୀଷ୍ଟପୂର୍ବ ବୋଲି କୁହାଯାଏ । ସେତେବେଳେ ପାଲେଷ୍ଟାଇନ ରୋମ ସାମ୍ରାଜ୍ୟଭୁକ୍ତ

ଥିଲା ଓ ରୋମର ସମ୍ରାଟ ଥିଲେ ଅଗଷ୍ଟସ ସିଜର୍ । ଯୀଶୁଙ୍କ ଜୀବନର ପ୍ରଥମ ୩୦ ବର୍ଷର ଘଟଣାବଳୀ ଏ ପର୍ଯ୍ୟନ୍ତ ଜଣାଯାଇ-ନାହିଁ । ସେ ଅନେକ ସମୟରେ ଚିନ୍ତାମଗ୍ନ ରହୁଥିଲେ । ସେ କିଛିକାଳ ନିର୍ଜନ ସ୍ଥାନରେ ଓ ଅରଣ୍ୟରେ କଟାଇଥିଲେ । ସେତେବେଳେ ତାଙ୍କର ବିଶ୍ୱାସ ଜନ୍ମିଲା ଯେ ପାଲେଷ୍ଟାଇନବାସୀଙ୍କୁ ଦାସତ୍ୱ ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଈଶ୍ୱରଙ୍କ ଦ୍ୱାରା ସେ ପୃଥିବୀପୃଷ୍ଠକୁ ପ୍ରେରିତ ହୋଇ ଅଛନ୍ତି । ସେ ୩୦ ବର୍ଷ ବୟସରେ ଗାଲିଲ୍ ନାମକ ସ୍ଥାନରେ ପ୍ରଥମେ ନିଜର ଧର୍ମମତ ପ୍ରଚାର ଆରମ୍ଭ କରିଥିଲେ ।

ସେ କହୁଥିଲେ ଯେ, ସମସ୍ତ ମନୁଷ୍ୟ ଏକ ଈଶ୍ୱରଙ୍କ ସନ୍ତାନ । ତେଣୁ ସମସ୍ତେ ପରସ୍ପରର ଭାଇଭଉଣୀ ପରି ଅଟନ୍ତି । ସମସ୍ତଙ୍କୁ ଭାଇ ଭଉଣୀ ଜ୍ଞାନରେ ସ୍ନେହ କଲେ ପରମପିତା-ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି । ମନରୁ ହିଂସା, ଦ୍ୱେଷ, ଦୂରକରି ଶତ୍ରୁ ମିତ୍ର ସମସ୍ତଙ୍କୁ ସ୍ନେହ କରିବା ଉଚିତ । ତାଙ୍କ ମତରେ ପାପୀକୁ କ୍ଷମାଦେବା, ଅମଙ୍ଗଳକାରୀର ମଙ୍ଗଳ କରିବା, ଶତ୍ରୁକୁ ଘୃଣା ନ କରି ଭଲପାଇବା, ଉଚ୍ଚ ନୀଚ, ଧନୀ-ଦରିଦ୍ର ଭେଦଭାବ ନ ରଖିବା ଏବଂ ଦୟା, ତ୍ୟାଗ, ପ୍ରେମ ଗୁଣଦ୍ୱାରା ସମସ୍ତ କର୍ମ ସମ୍ପାଦନ କରିବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । ଏଦ୍ୱାରା ଈଶ୍ୱରଙ୍କ ଆଶୀର୍ବାଦ ମିଳେ ଓ ମୃତ୍ୟୁପରେ ମନୁଷ୍ୟର ସ୍ୱର୍ଗପ୍ରାପ୍ତି ହୁଏ ।

ହିବ୍ରୁମାନେ ପ୍ରଚାର କରିଥିଲେ ଯେ, କେବଳ ସେମାନେ ହିଁ ଈଶ୍ୱରଙ୍କ ସନ୍ତାନ ଏବଂ ସେହିମାନେ ଈଶ୍ୱରଙ୍କ କୃପାର ପାତ୍ର; ମାତ୍ର ଯୀଶୁ ପ୍ରଚାର କଲେ ଯେ, ସବୁ ମନୁଷ୍ୟ ଈଶ୍ୱରଙ୍କ ସନ୍ତାନ

ଓ କୃପାର ପାତ୍ର । ସେ କହୁଥିଲେ ଯେ ପୂଜାକରି, ଧର୍ମଗ୍ରନ୍ଥ ପାଳନକରି ଈଶ୍ୱରପ୍ରାପ୍ତି ହୁଏ ନାହିଁ ବରଂ ପ୍ରେମ, ବିଶ୍ୱାସ ଓ ତ୍ୟାଗ ଦ୍ୱାରା ଈଶ୍ୱରପ୍ରାପ୍ତି ହୁଏ । ଏହା ହିବ୍ରୁମାନଙ୍କ ପକ୍ଷରେ ଅସହ୍ୟ ହେଲା । ଯୀଶୁ ସ୍ୱୟଂ 'ମେସିଆ' ବା ଈଶ୍ୱରଙ୍କ ଅବତାର ବୋଲି ଯୀଶୁଙ୍କର ଶିଷ୍ୟମାନେ ପ୍ରଚାର କଲେ । ଏହା ଫଳରେ ହିବ୍ରୁମାନଙ୍କର କ୍ରୋଧ ଆହୁରି ବଢ଼ିଗଲା । ସେମାନେ ପାଲେଷ୍ଟାଇନ୍‌ର ରୋମାନ ଶାସନକର୍ତ୍ତାଙ୍କ ଆଗରେ ଯୀଶୁଙ୍କୁ ଜଣେ ଧର୍ମଦ୍ରୋହୀ ବୋଲି ଅଭିଯୋଗ କଲେ ।



[ ଯୀଶୁଖ୍ରୀଷ୍ଟ ]

ଇହୁଦୀ ପୁରୋହିତମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ସେ ଯୀଶୁଙ୍କୁ ପ୍ରାଣଦଣ୍ଡ ଆଦେଶ ଦେଲେ । ଗୋଟିଏ କ୍ରସ୍ କାଠ ଉପରେ ଯୀଶୁଙ୍କୁ

କଣ୍ଟକବନ୍ଧ କବରପାଇ ଝୁଲାଇ ଦିଆଗଲା । ସେତେବେଳେ ସେ ଉତ୍ତେଜିତ ବିଚଳିତ ନ ହୋଇ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ, "ହେ ପିତା, ଏମାନେ ସମସ୍ତେ ଅଜ୍ଞାନ ଅନ୍ଧକାରରେ ବୁଡ଼ି ରହି-ଛନ୍ତି । ଏମାନଙ୍କୁ କ୍ଷମା ଦିଅ ଓ ସତ୍ ପଥରେ ଚଳାଅ ।" ଯୀଶୁଙ୍କ ଦ୍ୱାରା ପ୍ରବର୍ତ୍ତିତ ଧର୍ମକୁ ଖ୍ରୀଷ୍ଟଧର୍ମ କୁହାଯାଏ ।

ଯୀଶୁଙ୍କ ମୃତ୍ୟୁପରେ ଖ୍ରୀଷ୍ଟଧର୍ମ ଲୁପ୍ତପ୍ରାପ୍ତ ହେବାକୁ ବସିଥିଲା ବେଳେ ଇହୁଦୀମାନଙ୍କ ମଧ୍ୟରେ **ପଲ୍** ନାମକ ଜଣେ ବଡ଼ ପଣ୍ଡିତଙ୍କ ଆବିର୍ଭାବ ହେଲା । ସେ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହୋଇ ଖ୍ରୀଷ୍ଟଧର୍ମର ସାରତତ୍ତ୍ୱ ପ୍ରଚାର କରିବାକୁ ଲାଗିଲେ । ସେ ଦେଖିଲେ ଯେ, ଖ୍ରୀଷ୍ଟଙ୍କ ପ୍ରବର୍ତ୍ତିତ ମତରେ ଲୋକମାନଙ୍କୁ କଠୋର ସଂଯମ, ତ୍ୟାଗ ଓ ସାଧନାପାଇଁ ନିର୍ଦ୍ଦେଶ ଦିଆଯାଇଥିବାରୁ ତାହା ସମସ୍ତଙ୍କ ପକ୍ଷରେ ଗ୍ରହଣୀୟ ହୋଇପାରୁନାହିଁ । ତେଣୁ ଖ୍ରୀଷ୍ଟଧର୍ମର ନୀତିଗୁଡ଼ିକୁ କେତେକାଂଶରେ କୋହଳ କରି ସେ ପ୍ରଚାର କରିବାକୁ ଲାଗିଲେ । ତାଙ୍କ ଚେଷ୍ଟାରେ ଖ୍ରୀଷ୍ଟଧର୍ମ ଏସିଆମାଇନର, ଗ୍ରୀସ୍ ଓ ସ୍ପେନ୍ ପ୍ରଭୃତି ଦେଶରେ ପ୍ରସାର ଲାଭ କଲା ଏବଂ ସର୍ବତ୍ର ଯୀଶୁଙ୍କ ମହିମା କୀର୍ତ୍ତିତ ହେବାକୁ ଲାଗିଲା । ଖ୍ରୀଷ୍ଟିଆନ୍‌ମାନେ ରୋମ୍ ସମ୍ରାଟଙ୍କୁ ଦେବତା ରୂପେ ମାନ୍ୟ କରୁଥିବାରୁ ପଲ୍ ଏହାର ଖଣ୍ଡନ ପ୍ରତିରୋଧ କଲେ । ପଲ୍‌ଙ୍କର ଏହି କାର୍ଯ୍ୟକଳାପ ଯୋଗୁଁ ୬୭ ଖ୍ରୀଷ୍ଟାବ୍ଦରେ ତାଙ୍କୁ ରୋମରେ ପ୍ରାଣଦଣ୍ଡ ଦିଆଯାଇଥିଲା । ଖ୍ରୀଷ୍ଟଧର୍ମ ବ୍ୟାପକ ଭାବରେ ପ୍ରଚାର କରାଇଥିବାରୁ ପଲ୍ **ଦ୍ୱିତୀୟ ଖ୍ରୀଷ୍ଟ** ରୂପେ ସମ୍ମାନିତ ହୁଅନ୍ତି ।

ପଲ୍‌ଙ୍କ ମୃତ୍ୟୁପରେ ମଧ୍ୟ ଖ୍ରୀଷ୍ଟଧର୍ମ ରୋମରେ ବ୍ୟାପିବାକୁ ଲାଗିଲା । ଏଥିରେ ରୋମ ସମ୍ରାଟ୍‌ମାନେ ବିଚଳିତ ହୋଇ

ପଡ଼ିଲେ । ସେତେବେଳେ ରୋମରେ ବିଭିନ୍ନ ଦେବଦେବୀଙ୍କର ମୂର୍ତ୍ତି ଏପରିକି ସିଜରଙ୍କ ମୂର୍ତ୍ତିକୁ ମଧ୍ୟ ପୂଜା କରାଯାଉଥିଲା । ଖ୍ରୀଷ୍ଟଧର୍ମରେ ମୂର୍ତ୍ତିପୂଜାର ସ୍ଥାନ ନ ଥିଲା । ଖ୍ରୀଷ୍ଟଧର୍ମର ସାମ୍ୟ ଓ ମୈତ୍ରୀ ଭାବ ରୋମାନ ସାମ୍ରାଜ୍ୟରେ କ୍ରୀତଦାସ ପ୍ରଥା ଓ ଭୋଗବିଳାସ ବିରୁଦ୍ଧରେ ଯିବାରୁ ରୋମ ସମ୍ରାଟମାନେ ଖ୍ରୀଷ୍ଟଧର୍ମର ମୂଳୋତ୍ପାଟନ କରିବାକୁ ଚେଷ୍ଟା କଲେ । ଶହ ଶହ ବର୍ଷ ଅତ୍ୟାଚାର ଚାଲିଲେ ମଧ୍ୟ ଖ୍ରୀଷ୍ଟଧର୍ମ ଦବିଲା ନାହିଁ; ବରଂ ଖ୍ରୀଷ୍ଟଧର୍ମ ଅଧିକ ଲୋକପ୍ରିୟ ହେବାକୁ ଲାଗିଲା । ଶେଷରେ ସମ୍ରାଟ୍ କନ୍‌ଷ୍ଟାଣ୍ଟାଇନ ୩୩୭ ଖ୍ରୀଷ୍ଟାବ୍ଦରେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହେଲେ ଓ ସେହି ସମୟରୁ ଖ୍ରୀଷ୍ଟଧର୍ମ ରୋମର ରାଷ୍ଟ୍ରଧର୍ମ ରୂପେ ଗୃହୀତ ହେଲା । କନ୍‌ଷ୍ଟାଣ୍ଟାଇନଙ୍କ ପ୍ରବଳ ଉଦ୍ୟମ ଫଳରେ ଖ୍ରୀଷ୍ଟଧର୍ମ ରୋମ ସାମ୍ରାଜ୍ୟରେ ଅଳ୍ପକାଳ ମଧ୍ୟରେ ବ୍ୟାପିଗଲା ଓ ରୋମ ଖ୍ରୀଷ୍ଟଧର୍ମର ପ୍ରଧାନ ପୀଠରେ ପରିଣତ ହେଲା । ରୋମର ଧର୍ମଯାଜକ ଖ୍ରୀଷ୍ଟଧର୍ମର ସମସ୍ତ ଧର୍ମଯାଜକଙ୍କ ଉପରେ ଶୀର୍ଷସ୍ଥାନ ଅଧିକାର କଲେ ଓ ସେ ଈଶ୍ବରଙ୍କ ପ୍ରତିନିଧିରୂପେ ସମ୍ମାନିତ ହେଲେ । କାଳକ୍ରମେ ଖ୍ରୀଷ୍ଟଧର୍ମ ୟୁରୋପ ମହାଦେଶରେ ପ୍ରଚାରିତ ହୋଇ ପୃଥିବୀର ଅନ୍ୟାନ୍ୟ ମହାଦେଶକୁ ପ୍ରସାରିତ ହେଲା । ବର୍ତ୍ତମାନ ପୃଥିବୀରେ କୋଟି କୋଟି ନରନାରୀ ଖ୍ରୀଷ୍ଟଧର୍ମାବଲମ୍ବୀ ଅଟନ୍ତି ଓ ସେମାନେ ଯୀଶୁଙ୍କୁ ପୃଥିବୀର **ତ୍ରାଣକର୍ତ୍ତା** ରୂପେ ସମ୍ମାନ ଓ ଭକ୍ତି କରନ୍ତି । ଏହା ଫଳରେ ଖ୍ରୀଷ୍ଟଧର୍ମ ପୃଥିବୀରେ ଏକ ପ୍ରଧାନ ଧର୍ମରେ ପରିଣତ ହୋଇଅଛି ।

———

# ଏକାଦଶ ଅଧ୍ୟାୟ

## ମହମ୍ମଦ ଓ ଇସ୍‌ଲାମ ଧର୍ମ

ସେମିଟିକ୍ ଜାତିର ବେଦୁଇନ୍‌ମାନେ ଅତି ପ୍ରାଚୀନ କାଳରୁ ଆରବରେ ଯାଯାବର ଜୀବନଯାପନ କରୁଥିଲେ । ସେମାନେ ନାନା ଦେବଦେବୀଙ୍କ ମୂର୍ତ୍ତି ପୂଜା କରୁଥିଲେ । ଲୋହିତ ସାଗର ଉପକୂଳସ୍ଥ ମକ୍କା ନଗରୀ ସେମାନଙ୍କର ପ୍ରଧାନ ତୀର୍ଥ ଥିଲା ।

ମକ୍କାଠାରେ ୫୭୦ ଖ୍ରୀଷ୍ଟାବ୍ଦରେ ଏକ ଦରିଦ୍ର ପରିବାରରେ ମହମ୍ମଦ ଜନ୍ମଗ୍ରହଣ କରିଥିଲେ । ସେ ଯୌବନାବସ୍ଥାରେ ବାଣିଜ୍ୟ ବ୍ୟବସାୟ ତତ୍ତ୍ୱାବଧାନ କରିବା ପାଇଁ ସିରିଆ, ପାରସ୍ୟ ପ୍ରଭୃତି ଦେଶକୁ ଯାଇଥିଲେ । ସେହିସବୁ ସ୍ଥାନରେ ସେ ହିବ୍ରୁ ଓ ଖ୍ରୀଷ୍ଟଧର୍ମର ଲୋକମାନଙ୍କଠାରୁ ଧର୍ମତତ୍ତ୍ୱମାନ ଶୁଣି ଏକେଶ୍ୱର-ବାଦକୁ ଶ୍ରେଷ୍ଠ ଧର୍ମମତ ରୂପେ ବିଶ୍ୱାସ କରୁଥିଲେ । ସେହି ସମୟରୁ ସେ ଅଧିକାଂଶ ସମୟ ଈଶ୍ୱରଙ୍କ ବିଷୟରେ ଚିନ୍ତା କରିବାକୁ ଲାଗିଲେ । ଅବଶେଷରେ ୪୦ ବର୍ଷ ବୟସରେ ସେ ଜ୍ଞାନ ଲାଭ କରି ଗୋଟିଏ ନୂତନ ଧର୍ମ ପ୍ରଚାର କଲେ । ତାହା ଇସ୍‌ଲାମ ନାମରେ ଖ୍ୟାତ । ସେ ପ୍ରଚାର କଲେ ଯେ ଈଶ୍ୱର ବା ଆଲ୍ଲା ଏକ ଏବଂ ଅଦ୍ୱିତୀୟ । ସେ ନିଜେ ଆଲ୍ଲାଙ୍କର ଦୂତ । ମୂର୍ତ୍ତିପୂଜା ନ କରି ଏକ ଈଶ୍ୱର ବା ଆଲ୍ଲାଙ୍କର ଉପାସନା କରିବା ଉଚିତ । ସେ କହୁଥିଲେ, ଇସ୍‌ଲାମ ଧର୍ମରେ ସମସ୍ତେ ସମାନ; ସାର୍ବଜନୀନ ଭ୍ରାତୃଭାବ ଓ ଏକେଶ୍ୱରବାଦ ଇସ୍‌ଲାମ୍ ଧର୍ମର ମୂଳମନ୍ତ୍ର । ମହମ୍ମଦ ପ୍ରଥମେ ତାଙ୍କ ସ୍ତ୍ରୀ ଖାଦିଜାଙ୍କୁ ଓ ଅନ୍ୟ କେତେକ ଶିଷ୍ୟଙ୍କୁ ଏହି ଧର୍ମରେ ଦୀକ୍ଷିତ କରିଥିଲେ ।

ସେତେବେଳେ ଆରବର ଜନସାଧାରଣ ପ୍ରତିମା ପୂଜା କରୁଥିଲେ । ପୁରୋହିତ ଓ ପୂଜକମାନେ ଲୋକମାନଙ୍କୁ ଧର୍ମ ନାମରେ ଠକି ନାନାଭାବରେ ଅର୍ଥ ଉପାର୍ଜନ କରୁଥିଲେ । ମହମ୍ମଦଙ୍କ ନୂତନ ପ୍ରଧର୍ମ ଗ୍ରହଣ ଫଳରେ ପୁରୋହିତମାନଙ୍କ ଆୟରେ ବାଧା ଉପୁଜିଲା । ମକ୍କାବାସୀମାନେ ମଧ୍ୟ ତାଙ୍କର ବହୁଦିନର ଧର୍ମମତକୁ ଛାଡ଼ି ନୂତନ ଧର୍ମମତ ଗ୍ରହଣ କରିବାକୁ ବିଶେଷ ଆଗ୍ରହୀ ନଥିଲେ । ତେଣୁ ସେମାନେ ମହମ୍ମଦ ଓ ତାଙ୍କ ଶିଷ୍ୟମାନଙ୍କୁ ମାରିଦେବା ପାଇଁ ଷଡ଼ଯନ୍ତ୍ର କଲେ । ମହମ୍ମଦ ପ୍ରାଣ-ନାଶର ଆଶଙ୍କା କରି ୬୨୨ ଖ୍ରୀଷ୍ଟାବ୍ଦରେ ମଦିନାକୁ ପଳାଇଲେ । ସେହି ବର୍ଷଠାରୁ ମୁସଲମାନମାନଙ୍କର **ହିଜିରା** ଅବ୍ଦ ଗଣନା କରାଯାଏ । ମଦିନାରେ ଅନେକ ଲୋକ ମହମ୍ମଦଙ୍କ ଧର୍ମମତ ଗ୍ରହଣ କଲେ । ସେ ମଦିନାବାସୀଙ୍କ ସାହାଯ୍ୟରେ ମକ୍କାବାସୀମାନଙ୍କୁ ପରାସ୍ତ କରି ସେମାନଙ୍କୁ ଇସ୍‌ଲାମ ଧର୍ମରେ ଦୀକ୍ଷିତ କଲେ । କ୍ରମେ ଇସଲାମ ଧର୍ମ ସମଗ୍ର ଆରବ ଦେଶରେ ପ୍ରଚଳିତ ହେଲା । ୬୩୨ ଖ୍ରୀଷ୍ଟାବ୍ଦରେ ମହମ୍ମଦଙ୍କ ମୃତ୍ୟୁ ହେଲା । ତାହାଙ୍କ ପ୍ରଚାରିତ ଧର୍ମତତ୍ତ୍ୱ 'କୋରାନ'ରେ ଲିପିବଦ୍ଧ ହୋଇଅଛି ।

**ଇସ୍‌ଲାମ ଧର୍ମ ପ୍ରସାର**—ମହମ୍ମଦଙ୍କ ମୃତ୍ୟୁ ପରେ 'ଖଲିଫା' ବା ଧର୍ମଗୁରୁମାନଙ୍କ ନେତୃତ୍ୱରେ ଆରବବାସୀମାନେ ସଙ୍ଘବଦ୍ଧ ହୋଇ ବିଭିନ୍ନ ଦେଶ ଜୟ କଲେ ଓ ସେଠାରେ ଇସ୍‌ଲାମ ଧର୍ମ ପ୍ରଚାର କଲେ । ଏହିପରି ଭାବରେ ସିରିଆ, ପାରସ୍ୟ ମିଶର ଏବଂ ସ୍ପେନ୍ ପର୍ଯ୍ୟନ୍ତ ରାଜ୍ୟମାନ ଖଲିଫାଙ୍କ ଅଧୀନ ହେଲା । ଇସ୍‌ଲାମ ଧର୍ମ ଚୀନ ସାମ୍ରାଜ୍ୟର ପଶ୍ଚିମାଞ୍ଚଳ ଓ ଭାରତର ସିନ୍ଧୁ ପ୍ରଦେଶ ପର୍ଯ୍ୟନ୍ତ ବ୍ୟାପ୍ତ ହେଲା । ଫଳରେ ଇସ୍‌ଲାମ ଧର୍ମ

ମହମ୍ମଦଙ୍କ ମୃତ୍ୟୁର ଶହେ ବର୍ଷ ମଧ୍ୟରେ ଏକ ବିଶ୍ୱଧର୍ମରେ ପରିଣତ ହେଲା ।

**ହାରୁନ୍-ଅଲ୍-ରସିଦ** —ଖଲିଫା ବା ଧର୍ମଗୁରୁ ହାରୁନ୍-ଅଲ୍-ରସିଦଙ୍କ ସମୟରେ ବାଗ୍‌ଦାଦ ପୃଥିବୀରେ ଏକ ପ୍ରସିଦ୍ଧ ଓ ସମୃଦ୍ଧିଶାଳୀ ନଗରରେ ପରିଣତ ହୋଇଥିଲା ଏବଂ ବାଗ୍‌ଦାଦ୍‌ର ସଭ୍ୟତା ଉନ୍ନତିର ଚରମସୀମାରେ ପହଞ୍ଚିଥିଲା । ହାରୁନ୍-ଅଲ୍-ରସିଦ୍ ୭୮୬ ଖ୍ରୀଷ୍ଟାବ୍ଦରୁ ୮୦୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଅତି ଗୁଣୀଲୋକ ଥିଲେ । ତାଙ୍କ ରାଜତ୍ୱ କାଳରେ ରାଜଧାନୀ ବାଗ୍‌ଦାଦ୍‌ରେ ବହୁ ସୁନ୍ଦର ସୁନ୍ଦର କୋଠା-ବାଡ଼ି, ଶିକ୍ଷାନୁଷ୍ଠାନ, ଦୋକାନ, ବଜାର ଓ ଉଦ୍ୟାନ ନିର୍ମିତ ହୋଇ ନଗରର ଶ୍ରୀ ବର୍ଦ୍ଧିତ ହୋଇଥିଲା । ଖଲିଫା ଶିକ୍ଷା ଏବଂ କଳାର ପ୍ରଧାନ ପୃଷ୍ଠପୋଷକ ଥିବାରୁ ବିଭିନ୍ନ ଦେଶରୁ ବହୁ ଜ୍ଞାନୀ, ପଣ୍ଡିତ, କବି ଓ କଳାକାରମାନେ ଆସି ବାଗଦାଦ୍‌ରେ ଅଧ୍ୟାପନା କରୁଥିଲେ । ବାଗ୍‌ଦାଦ୍‌ରେ ଚିକିତ୍ସାଳୟମାନ ସ୍ଥାପିତ ହୋଇଥିଲା । ପ୍ରବୀଣ ଚିକିତ୍ସକମାନେ ଭେଷଜ ଓ ଅସ୍ତ୍ର ଚିକିତ୍ସା କରୁଥିଲେ । ଗବେଷଣାଗାରରେ ବୈଜ୍ଞାନିକମାନେ ଗବେଷଣା କରି ବୈଜ୍ଞାନିକ ତତ୍ତ୍ୱ ଅନୁସନ୍ଧାନ କରୁଥିଲେ । ବାଗ୍‌ଦାଦ୍‌ର ବଣିକମାନେ ୟୁରୋପ ଓ ଏସିଆର ବିଭିନ୍ନ ଦେଶ ସହିତ ବାଣିଜ୍ୟ କରି ଧନରତ୍ନ ଆଣୁଥିଲେ । ଏହାଦ୍ୱାରା ବାଗ୍‌ଦାଦ୍ ପୃଥିବୀରେ ଏକ ସମୃଦ୍ଧିଶାଳୀ ନଗରୀରେ ପରିଣତ ହୋଇଥିଲା । ସେତେବେଳେ ଫ୍ରାନ୍ସ ଓ ଚୀନର ରାଜଦୂତମାନେ ବାଗ୍‌ଦାଦରେ ରହୁଥିଲେ ।

ଶାସନର ସୁବିଧା ଦୃଷ୍ଟିରୁ ହାରୁନ୍-ଅଲ୍-ରସିଦ ଅନେକଗୁଡ଼ିଏ ଶାସନ ବିଭାଗ ସୃଷ୍ଟି କରି ବହୁ କର୍ମଚାରୀ ନିଯୁକ୍ତ କରିଥିଲେ

ଓ ପ୍ରଜାମାନଙ୍କର ସମସ୍ତ ଅସୁବିଧା ଦୂର କରିବାକୁ ଚେଷ୍ଟା-କରୁଥିଲେ । ତାଙ୍କୁ କେନ୍ଦ୍ର କରି ଓ ଗୌରବମୟ କାର୍ଯ୍ୟ-କଳାପକୁ ବିଷୟବସ୍ତୁ କରି ଅନେକ ଆରବ୍ୟ ଉପନ୍ୟାସ ଲିଖିତ ହୋଇଥିଲା ।

ଖ୍ରୀ: ଅ: ୭୫୦
ଆରବ ସାମ୍ରାଜ୍ୟ

ହାରୁନ୍-ଅଲ୍-ରସିଦଙ୍କ ମୃତ୍ୟୁପରେ ବାଗ୍‌ଦାଦ୍‌ର ଖଲିଫା-ମାନେ ଦୁର୍ବଳ ହୋଇ ପଡ଼ିଲେ ଓ ସମୃଦ୍ଧିଶାଳୀ ବାଗ୍‌ଦାଦ୍ ନଗରୀ କ୍ରମେ ଶ୍ରୀହୀନ ହୋଇପଡ଼ିଲା । ଏହା ପ୍ରଥମେ ତୁର୍କୀମାନଙ୍କ ଦ୍ୱାରା ଅଧିକୃତ ହେଲା ଏବଂ ଶେଷରେ ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗରେ ମଙ୍ଗୋଲମାନେ ଚେଙ୍ଗିଜ୍ ଖାଁଙ୍କ ନେତୃତ୍ୱରେ ବାଗ୍‌ଦାଦ୍ ଆକ୍ରମଣ କରି ତାହାକୁ ଧ୍ୱଂସ କରିଦେଲେ ।

**ଆରବ ସଭ୍ୟତା**—ଆରବମାନେ ରାଜ୍ୟ ବିସ୍ତାରପାଇଁ ଭାରତ, ପାରସ୍ୟ, ଗ୍ରୀସ୍ ଆଦି ଦେଶ ଆକ୍ରମଣ କରି ସେହି ସବୁ ପ୍ରାଚୀନ ସଭ୍ୟ ଓ ଉନ୍ନତ ଦେଶମାନଙ୍କ ସମ୍ପର୍କରେ

ଆସିଥିଲେ । ସେମାନେ ଭାରତୀୟମାନଙ୍କଠାରୁ ଦର୍ଶନ, ଆୟୁର୍ବେଦ ଓ ଗଣିତ ବିଦ୍ୟା ଶିକ୍ଷା କରିଥିଲେ ଏବଂ ଚୀନ ଓ ଗ୍ରୀକ୍‌ମାନଙ୍କଠାରୁ ବିଜ୍ଞାନ ସମ୍ବନ୍ଧୀୟ ନୂତନ ଜ୍ଞାନଲାଭ କରିଥିଲେ । ହିବ୍ରୁ, ପାରସୀ ଓ ବୌଦ୍ଧମାନଙ୍କର ଧର୍ମତତ୍ତ୍ୱ ସେମାନଙ୍କ ସଂସ୍କୃତି ଉପରେ ପ୍ରଭାବ ପକାଇଥିଲା । ଜ୍ଞାନର ପ୍ରସାର ନିମନ୍ତେ ସେମାନେ ବାଗଦାଦ୍, କାଏରୋ, କର୍ଡୋଭା ପ୍ରଭୃତି ସ୍ଥାନରେ ବିଶ୍ୱବିଦ୍ୟାଳୟ ଓ ପାଠାଗାର ନିର୍ମାଣ କରିଥିଲେ । ପରେ କାର୍ଡୋଭା ବିଶ୍ୱବିଦ୍ୟାଳୟର ଅନୁକରଣରେ ପ୍ୟାରିସଠାରେ ଏବଂ ପରେ ଅକ୍ସଫୋର୍ଡ଼ ଓ କେମ୍ବ୍ରିଜରେ ବିଖ୍ୟାତ ବିଶ୍ୱବିଦ୍ୟାଳୟମାନ ସ୍ଥାପିତ ହୋଇଥିଲା ।

ଆରବୀୟମାନଙ୍କ ବିଜ୍ଞାନ ଜଗତକୁ ଶ୍ରେଷ୍ଠ ଦାନ ହେଉଛି ସଂଖ୍ୟାଲିଖନ ପ୍ରଣାଳୀର ସୃଷ୍ଟି । ଆରବୀୟମାନେ ୧ ଠାରୁ ୯ ପର୍ଯ୍ୟନ୍ତ ଏବଂ ତାହା ପରେ ଶୂନ୍ୟ ଯୋଗକରି ଯେ କୌଣସି ସଂଖ୍ୟା ସରଳ ଭାବରେ ଲେଖିପାରିବା ଉପାୟ ବାହାର କରିଥିଲେ । ବୀଜଗଣିତ ଶିକ୍ଷା ଆରବରୁ ୟୁରୋପକୁ ଯାଇଥିଲା । ଏହାଛଡ଼ା ପଦାର୍ଥ ବିଜ୍ଞାନ ଓ ରସାୟନିକ ଶାସ୍ତ୍ରରେ ଅନେକ ତଥ୍ୟ ଆରବ ବୈଜ୍ଞାନିକମାନେ ଉଦ୍ଭାବନ କରିଥିଲେ । ଆରବୀୟମାନେ ଚୀନରୁ କାଗଜ ତିଆରି ଓ ନାବିକ କମ୍ପାସ୍ ସମ୍ବନ୍ଧରେ ଶିକ୍ଷାପାଇ ତାହା ୟୁରୋପୀୟମାନଙ୍କୁ ଶିଖାଇଥିଲେ । ଦୂରବୀକ୍ଷଣ ଯନ୍ତ୍ର, ଅତର, ସୁବାସିତ ତେଲ ଓ ମଲମ ଆଦି ଆରବୀୟମାନେ ତିଆରି କରି ଜାଣିଥିଲେ । ଆରବୀୟମାନେ ସୁଚିକିତ୍ସକ ଥିଲେ । ସେମାନେ ଇସଲାମଧର୍ମ ଗ୍ରହଣକରି କାଳକ୍ରମେ ଯେଉଁ ନୂତନ ସଂସ୍କୃତି ବିକାଶ କରିଥିଲେ ତାହା ମାନବ ସଭ୍ୟତାକୁ ବହୁ ପରିମାଣରେ ଉନ୍ନତ କରିଥିଲା ।

## ଦ୍ୱାଦଶ ଅଧ୍ୟାୟ

## ପଶ୍ଚିମ ୟୁରୋପରେ ଜ୍ଞାନର ପୁନର୍ଜାଗରଣ

ପ୍ରାଚୀନ ଗ୍ରୀସ୍ ଓ ରୋମର ଶିକ୍ଷା ଓ ସଭ୍ୟତା ରୋମ ସାମ୍ରାଜ୍ୟ ଗଠନ ହେଲାପରେ ସମଗ୍ର ପଶ୍ଚିମ ୟୁରୋପରେ ବ୍ୟାପି ଯାଇଥିଲା । ମାତ୍ର ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ୟୁରୋପରେ ଲୋକମାନଙ୍କର ଶିକ୍ଷା ଓ ସଭ୍ୟତାର ଅଧୋଗତି ହୋଇଥିଲା । ଏହି ମଧ୍ୟଯୁଗକୁ ୟୁରୋପରେ ଏକ **ଅନ୍ଧକାରମୟ ଯୁଗ** ବୋଲି କୁହାଯାଏ ।

ଧର୍ମର ଅସୀମ ପ୍ରଭାବ ଓ ଜ୍ଞାନର ଅବସାନ ମଧ୍ୟଯୁଗର **ବ**ଶେଷତ୍ୱ । ଏହି ଯୁଗରେ ଧର୍ମଯାଜକମାନେ ଓ ମଠର ପୁରୋହିତମାନେ ଅତ୍ୟନ୍ତ ପ୍ରଭାବଶାଳୀ ହୋଇଥିଲେ । ସେମାନଙ୍କ ଦ୍ୱାରା ଲିଖିତ ଅନ୍ଧବିଶ୍ୱାସପୂର୍ଣ୍ଣ ଓ କାଳ୍ପନିକ ବିଷୟମାନ ଏକମାତ୍ର ଶିକ୍ଷଣୀୟ ବିଷୟ ବୋଲି ସେମାନେ ପ୍ରଚାର କରୁଥିଲେ । ପ୍ରାଚୀନ ଗ୍ରୀକ୍ ସାହିତ୍ୟ, ଦର୍ଶନ ଓ ବିଜ୍ଞାନ ଇତ୍ୟାଦି ବିଷୟ ଉନ୍ନତ ଓ ମହାନ୍ ଥିଲେ ମଧ୍ୟ ସେଗୁଡ଼ିକ ଖ୍ରୀଷ୍ଟିୟାନ ଧର୍ମର ବାହାରେ ଥିବାରୁ ୟୁରୋପୀୟମାନେ ସେଗୁଡ଼ିକୁ ପଢିପାରୁ ନ ଥିଲେ । ଏହି ଯୁଗରେ ସମାଜରେ **ସାମନ୍ତ**ମାନେ ପ୍ରଭୃତଶକ୍ତିଶାଳୀ ଥିଲେ । ସେମାନେ ସାଧାରଣ ଲୋକଙ୍କ ଶିକ୍ଷା ଦୀକ୍ଷା ପ୍ରତି ଆଦୌ ମନ ଦେଉ ନଥିଲେ । ୧୦୦୫ ଖ୍ରୀଷ୍ଟାବ୍ଦରୁ ୧୨୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରାୟ ଦୁଇ ଶତାବ୍ଦୀ ଧରି ଖ୍ରୀଷ୍ଟିୟାନ ଧର୍ମର ଲୋକ ଓ ମୁସଲମାନ-ମାନଙ୍କ ମଧ୍ୟରେ **ଧର୍ମଯୁଦ୍ଧ** (Crusade) ଲାଗି ରହିଥିଲା । ମଧ୍ୟଯୁଗର ଅବସାନ ବେଳକୁ ଧର୍ମଯୁଦ୍ଧ ଓ ଆଭ୍ୟନ୍ତରୀଣ ଖଣ୍ଡଯୁଦ୍ଧ ମଧ୍ୟ ଶେଷ ହେଲା । ସାମନ୍ତମାନଙ୍କ ପ୍ରାଧାନ୍ୟ କମିଗଲା । ଚତୁର୍ଦ୍ଦଶ

ଶତାବ୍ଦୀ ଆରମ୍ଭରୁ ପଶ୍ଚିମ ୟୁରୋପରେ ଲୋକମାନେ ପୁଣି ପ୍ରାଚୀନ ଗ୍ରୀସ୍ ଓ ରୋମର ଶିକ୍ଷା, କଳା ଓ ବିଜ୍ଞାନ ଆଲୋଚନା କରିବାକୁ ମନ ବଳାଇଲେ । ସେମାନେ ବୈଜ୍ଞାନିକ ଭିତ୍ତିରେ ଚିନ୍ତା କରିବାକୁ ଆରମ୍ଭ କଲେ । ୟୁରୋପରେ କୁସଂସ୍କାର ଓ ଅନ୍ଧବିଶ୍ବାସ ଲୋପ ପାଇବାକୁ ଲଗିଲା । ମଧ୍ୟଯୁଗର ଅବସାନ ଘଟି ଆଧୁନିକ ଯୁଗ ଆରମ୍ଭ ହେଲା । ପ୍ରାଚୀନ ଶିକ୍ଷା, ସଂସ୍କୃତି ଓ ଜ୍ଞାନର ପୁନର୍ବିକାଶ ସାଧିତ ହେଲା ।

ଜ୍ଞାନର ନବୀକରଣ ନିମନ୍ତେ ଇଟାଲୀୟ କବି ଦାନ୍ତେ (୧୨୬୫ ଖ୍ରୀ:ଅ:—୧୩୨୧ ଖ୍ରୀ.ଅ.)ଙ୍କ ଦାନ ଗୁରୁତ୍ୱପୂର୍ଣ୍ଣ ଅଟେ । ସେ ତାଙ୍କର କାବ୍ୟ "ସ୍ୱର୍ଗୀୟ ମିଳନ" Divine comedyରେ ଧର୍ମର ବିଶ୍ଳେଷଣ କରି ଗ୍ରୀସ୍ ଓ ରୋମାନ୍‌ମାନଙ୍କ ଚିନ୍ତାଧାରା ପରି ସ୍ୱାଧୀନ ଚିନ୍ତା ପ୍ରକାଶ କଲେ । ଦାନ୍ତେଙ୍କ କାବ୍ୟ ପାଠ କରି ଇଟାଲୀୟମାନଙ୍କ ମଧ୍ୟରେ ନୂତନ ଚିନ୍ତା ଜାଗ୍ରତ ହେଲା । ଅନ୍ୟ ଏକ ଐତିହାସିକ ଘଟଣା ଘଟିବାଦ୍ୱାରା ପ୍ରାଚୀନ ଗ୍ରୀକ୍ ସଭ୍ୟତା, ସାହିତ୍ୟ ଓ କଳା ଇତ୍ୟାଦି ବିକାଶ ଲାଭ କଲା । ପୂର୍ବ ରୋମାନ ସାମ୍ରାଜ୍ୟରୁ ରାଜଧାନୀ କନଷ୍ଟାଣ୍ଟିନୋପୋଲ ୧୪୫୩ ଖ୍ରୀଷ୍ଟାବ୍ଦରେ ତୁର୍କମାନଙ୍କ ଦ୍ୱାରା ଅଧିକୃତ ହେଲା ! ତୁର୍କମାନେ ଏହି ନଗର ଆକ୍ରମଣ କରିବାରୁ ପଣ୍ଡିତମାନେ ପ୍ରାଚୀନ ଧର୍ମଗ୍ରନ୍ଥମାନ ନେଇ ୟୁରୋପକୁ ପଳାଇଗଲେ । ସେମାନେ ଇଟାଲୀୟମାନଙ୍କ ଦ୍ୱାରା ସମ୍ମାନିତ ହେଲେ । ଏହି ପଣ୍ଡିତମାନେ ଇଟାଲୀୟ ସ୍କୁଲ ଓ ବିଶ୍ୱବିଦ୍ୟାଳୟରେ ଅସଂଖ୍ୟ ଛାତ୍ରଙ୍କୁ ଗ୍ରୀକ୍ ଭାଷାରେ ଦର୍ଶନ, ବିଜ୍ଞାନ, ସାହିତ୍ୟ, ଇତିହାସ ଓ ଭୂଗୋଳ ଶିକ୍ଷା ଦେଲେ । ଏହିପରି ଇଟାଲୀରେ ପ୍ରଥମେ ଜ୍ଞାନର ନବୀକରଣ ଆରମ୍ଭ ହେଲା । କ୍ରମେ ଏହି ଜ୍ଞାନର ସ୍ରୋତ ପଶ୍ଚିମ-ୟୁରୋପକୁ ବ୍ୟାପିବାକୁ ଲଗିଲା ।

**ରୋଜରବେକନ**—ସପ୍ତଦଶ ଶତାବ୍ଦୀରେ ରୋଜର-ବେକନ ନାମକ ଅକ୍ସଫୋର୍ଡ଼ର ଜଣେ ପଣ୍ଡିତ ବୈଜ୍ଞାନିକ କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଦୂରକରି ପ୍ରତ୍ୟେକ ବିଷୟରେ ପରୀକ୍ଷାମୂଳକ ଗବେଷଣା କରିବାକୁ ଲୋକମାନଙ୍କୁ ଉପଦେଶ ଦେଲେ । ସେ ବୈଜ୍ଞାନିକ ପରୀକ୍ଷା କରି କହିଥିଲେ ଯେ ଘୋଡ଼ା ବା ବଳଦ ବଦଳରେ ଯନ୍ତ୍ର ସାହାଯ୍ୟରେ ଗାଡ଼ି ଚାଲିପାରେ । ପାଲ ବା ଆହୁଲା ବିନା ଯନ୍ତ୍ର ସାହାଯ୍ୟରେ ଜାହାଜ ଚାଲିପାରେ ଓ ପକ୍ଷୀ ପରି ବିମାନ ଯନ୍ତ୍ର ସାହାଯ୍ୟରେ ଆକାଶ ର ଉଡ଼ିପାରେ । ତାଙ୍କର ଏହି ଚିନ୍ତା ଓ ଗବେଷଣା ୟୁରୋପରେ ନବଜାଗରଣର ସୂଚନା ଦେଇଥିଲା ।

ଇତି ମଧ୍ୟରେ ୟୁରୋପୀୟମାନେ ଆରବ ଲୋକଙ୍କଠାରୁ କାଗଜ ତିଆରି ପ୍ରଣାଳୀ ଶିଖିଥିଲେ । କାଗଜର ପ୍ରସାର ସଙ୍ଗେ ସଙ୍ଗେ ଜର୍ମାନୀରେ ମୁଦ୍ରା ଯନ୍ତ୍ର ଉଦ୍ଭାବିତ ହେଲା । ଜନ୍ ଗଟେନ୍‌ବର୍ଗ ୧୪୫୦ ଖ୍ରୀ.ଅ.ରେ ଜର୍ମାନୀରେ ମୁଦ୍ରାଯନ୍ତ୍ର ସାହାଯ୍ୟରେ ପୁସ୍ତକ ଛାପିଲେ । ଅଳ୍ପସମୟ ପରେ ଇଉରୋପର ବିଭିନ୍ନ ସ୍ଥାନରେ ମୁଦ୍ରାଯନ୍ତ୍ର ବ୍ୟବହୃତ ହୋଇ ଗଳ୍ପ, ଉପନ୍ୟାସ, ନାଟକ ଓ କବିତା ଇତ୍ୟାଦି ମୁଦ୍ରିତ ହେଲା । ଜନସାଧାରଣ ଅଳ୍ପ ମୂଲ୍ୟରେ ସେହି ପୁସ୍ତକଗୁଡ଼ିକ କିଣି ପ୍ରସିଦ୍ଧ ଲେଖକମାନଙ୍କର ଗ୍ରନ୍ଥପାଠ କରିବାକୁ ସୁଯୋଗ ପାଇଲେ । ଏହା ଦ୍ୱାରା ନୂତନ ଜ୍ଞାନର ପ୍ରସାର ହେଲା ଓ ମଧ୍ୟ-ଯୁଗର ଅଜ୍ଞାନତା ଓ ଅନ୍ଧବିଶ୍ୱାସ ଦୂର ହେଲା । ଜ୍ଞାନର ନବୀକରଣ ସଙ୍ଗେ ସଙ୍ଗେ କଳାକାରମାନେ ଗ୍ରୀକ୍-କଳା ଓ ଭାସ୍କର୍ଯ୍ୟର ଅନୁକରଣରେ ନୂତନ କଳାସୃଷ୍ଟି କଲେ । ଷୋଡ଼ଶ ଶତାବ୍ଦୀରେ ଏହି ଚିତ୍ରକଳା ଉନ୍ନତିର ଶୀର୍ଷ

ଦେଶରେ ପରିଣତ ହେଲା । ଏହି ଯୁଗର ଶ୍ରେଷ୍ଠ ଚିତ୍ରକର ଓ ଶିଳ୍ପୀମାନଙ୍କ ମଧ୍ୟରେ **ମାଇକେଲ ଏନ୍‌ଜେଲୋ, ରାଫେଲ୍ ଓ ଲିଓନାର୍ଡୋ-ଡା-ଭିନ୍‌ସି** ପ୍ରଧାନ ।

ସାମନ୍ତ ପ୍ରଥାର ବିଲୋପ ଓ ଧର୍ମଯୁଦ୍ଧର ଅବସାନ ପରେ ୟୁରୋପରେ ଶାନ୍ତି ସ୍ଥାପିତ ହେଲା । ବଡ଼ ବଡ଼ ଜାତୀୟ ରାଜ୍ୟ ପ୍ରତିଷ୍ଠିତ ହେବା ଫଳରେ ଶାନ୍ତି ଓ ଶୃଙ୍ଖଳା ଦୃଢ଼ୀଭୂତ ହେଲା । ଗୀର୍ଜାମାନଙ୍କରେ ନୂତନ ପ୍ରଣାଳୀରେ ଶିକ୍ଷା ଦେବାର ବ୍ୟବସ୍ଥା ହେଲା । ଅନେକ ଭୌଗୋଳିକ ତତ୍ତ୍ୱ ଜଣାପଡ଼ିବାରୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ଅବାଧ ବାଣିଜ୍ୟ ବ୍ୟବସାୟ ଚାଲିଲା । ଦେଶ ସମୃଦ୍ଧିଶାଳୀ ହେବାରୁ ବିଭିନ୍ନ ସ୍ଥାନରେ ନୂତନ ନଗରମାନ ଗଢ଼ି ଉଠିଲା । ସେଥିମଧ୍ୟରେ ଭେନିସ, ଜେନୋଆ, ଫ୍ଲୋରେନ୍‌ସ, ଲିସ୍‌ବନ, ପ୍ୟାରିସ୍, ଲଣ୍ଡନ, ହାମ୍ବର୍ଗ, ନରେମ୍ବର୍ଗ, ମସ୍କୋ ପ୍ରଭୃତି ପ୍ରଧାନ । ଏହି ସହରଗୁଡ଼ିକ ଶିକ୍ଷା, ସଭ୍ୟତା ଓ ବାଣିଜ୍ୟକେନ୍ଦ୍ରରେ ପରିଣତ ହେଲା । ଏତଦ୍‌ବ୍ୟତୀତ ପ୍ୟାରିସ, ଅକ୍‌ସଫୋର୍ଡ଼ ଓ କେମ୍ବ୍ରିଜ ଇତ୍ୟାଦି ସ୍ଥାନରେ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠିତ ହେଲା । ଏହିସବୁ ବିଶ୍ୱବିଦ୍ୟାଳୟରେ ଗ୍ରୀକ୍ ସାହିତ୍ୟ ବିଶେଷ ଭାବରେ ପଠିତ ହେଲା ଏବଂ ପ୍ରସିଦ୍ଧ ଅଧ୍ୟାପକମାନେ ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ ହୋଇ ସ୍ୱାଧୀନ ଚିନ୍ତାର ବିକାଶ ଘଟାଇଥିଲେ । ଏହିସବୁ ବିଶ୍ୱବିଦ୍ୟାଳୟରେ କ୍ରମେ ନୂତନ ଭାବଧାରା ପ୍ରକାଶିତ ହେବାରୁ ୟୁରୋପରେ ନବଯୁଗର ଜାଗରଣ ହେଲା ।

———

# ତ୍ରୟୋଦଶ ଅଧ୍ୟାୟ

## ଭୌଗୋଳିକ ଆବିଷ୍କାର

**ମାର୍କୋପୋଲ ଓ ପ୍ରାଚ୍ୟଦେଶ ଆବିଷ୍କାର**—ମଧ୍ୟ-ଯୁଗରେ ୟୁରୋପୀୟମାନେ ଚୀନ, ଭାରତ ପ୍ରଭୃତି ପ୍ରାଚ୍ୟ ଦେଶମାନଙ୍କ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ । ଏହି ପ୍ରାଚ୍ୟ ଦେଶଗୁଡ଼ିକରେ ଲୋକେ ସେତେବେଳେ ଅଧିକ ସଭ୍ୟ ଓ ଶିକ୍ଷିତ ଥିଲେ । ତ୍ରୟୋଦଶ ଶତାବ୍ଦୀରେ ମୋଗଲ ସମ୍ରାଟ କୁବ୍ଲାଇ ଖାଁ ଚୀନରେ ରାଜତ୍ୱ କରୁଥିବାବେଳେ ମାଫିଓ-ପୋଲୋ ଓ ନିକୋଲୋ ପୋଲୋ ନାମକ ଇଟାଲୀର ଭେନିସ୍ ସହରବାସୀ ଦୁଇଜଣ ବଣିକ ପ୍ରଥମେ ଚୀନ ପର୍ଯ୍ୟନ୍ତ ଯାଇଥିଲେ । ସେମାନଙ୍କ ଠାରୁ ଖ୍ରୀଷ୍ଟଧର୍ମ ସମ୍ବନ୍ଧରେ କଥାମାନ ଶୁଣି କୁବ୍ଲାଇ ଖାଁ ବିଶେଷ ଆନନ୍ଦିତ ହୋଇଥିଲେ । ସେମାନେ ସ୍ୱଦେଶକୁ ଫେରିବା ସମୟରେ ସେ ସ୍ୱର୍ଣ୍ଣଫଳକରେ ଖଣ୍ଡିଏ ପତ୍ର ସେମାନଙ୍କ ହସ୍ତରେ ପୋପଙ୍କ ନିକଟକୁ ପଠାଇଥିଲେ । ଶହେଜଣ ଖ୍ରୀଷ୍ଟଧର୍ମର ପଣ୍ଡିତଙ୍କୁ ଚୀନ ପଠାଇବା ପାଇଁ ସେ ପୋପଙ୍କୁ ଅନୁରୋଧ କରିଥିଲେ । ସେତେବେଳେ କୌଣସି ଖ୍ରୀଷ୍ଟଧର୍ମ ପ୍ରଚାରକ ସୁଦୂର ଚୀନକୁ ଯିବାପାଇଁ ରାଜି ହେଲେ ନାହିଁ ।

ପୋଲୋ ଦୁଇଭାଇ ପୁଣି ଥରେ ଚୀନ ଅଭିମୁଖରେ ଯାତ୍ରା କଲାବେଳେ ସେମାନଙ୍କ ଆତ୍ମୀୟ ମାର୍କୋପୋଲୋଙ୍କୁ ସାଙ୍ଗରେ ନେଇ ଯାଇଥିଲେ । ସେମାନେ ଭୂମଧ୍ୟସାଗର ପାର ହୋଇ ପାଲେଷ୍ଟାଇନ୍, ଆର୍ମେନିଆ, ମେସୋପଟାମିଆ, ପାରସ୍ୟ, ତୁର୍କିସ୍ଥାନ ରାଜ୍ୟ ଦେଇ ସ୍ଥଳପଥରେ ଯାତ୍ରା କରିଥିଲେ ଏବଂ

ଗୋବି ମରୁଭୂମି ଅତିକ୍ରମ କରି ୧୨୭୨ ଖ୍ରୀଷ୍ଟାବ୍ଦରେ ସାଢ଼େ ତିନି ବର୍ଷ ପରେ ଚୀନ ରାଜଧାନୀ ପେକିଂଠାରେ ପହଞ୍ଚିଲେ ।

କୁବ୍ଲାଇ ଖାଁ ଯୁବକ ମାର୍କୋପୋଲଙ୍କୁ ଦେଖି ଅତ୍ୟନ୍ତ ଖୁସି ହେଲେ । ମାର୍କୋପୋଲୋ ଅଳ୍ପ କାଳ ମଧ୍ୟରେ ମୋଙ୍ଗଲ ଓ ଚୀନ ଭାଷା ଶିକ୍ଷା କରିଥିଲେ । ତାଙ୍କର ତୀକ୍ଷ୍ଣ ବୁଦ୍ଧି ଓ କାର୍ଯ୍ୟଦକ୍ଷତାର ପରିଚୟ ପାଇ କୁବଲାଇ ଖାଁ ତାଙ୍କୁ ପ୍ରାଦେଶିକ ଶାସନକର୍ତ୍ତା ରୂପେ ନିଯୁକ୍ତ କରିଥିଲେ । ତାଙ୍କର ଚୀନରେ ୨୪ ବର୍ଷ କାଳ ଅବସ୍ଥାନ ସମୟରେ ସେ ଚୀନରେ ବିଭିନ୍ନ ଅଞ୍ଚଳ ଜାପାନ, ବ୍ରହ୍ମଦେଶ ପ୍ରଭୃତିରେ ଭ୍ରମଣ କରି ପ୍ରାଚ୍ୟ ରାଜ୍ୟମାନଙ୍କ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିଥିଲେ । ସେତେବେଳେ ଏହି ଅଞ୍ଚଳରେ ଥିବା ବନ୍ଦରଗୁଡ଼ିକ ବାଣିଜ୍ୟ ବ୍ୟବସାୟର କେନ୍ଦ୍ର ଥିଲା । ବାଣିଜ୍ୟ-ତରୀମାନଙ୍କରେ ନାନାବିଧ ପଣ୍ୟଦ୍ରବ୍ୟ ବୋଝାଇ ହୋଇ ବନ୍ଦରମାନଙ୍କୁ ଆସୁଥିଲା । ଚୀନ୍ ଦେଶରେ ବହୁ ମୂଲ୍ୟବାନ ରେଶମବସ୍ତ୍ର, ଶାଲ ଓ ନାନା କାରୁକାର୍ଯ୍ୟଖଚିତ ଅଳଙ୍କାର ପ୍ରଭୃତି ପ୍ରସ୍ତୁତ ହେଉଥିବାର ଦେଖି ସେ ଆଶ୍ଚର୍ଯ୍ୟ ହୋଇଥିଲେ । ମାର୍କୋପୋଲୋ ତାଙ୍କ ଜନ୍ମଭୂମିକୁ ଫେରି ଯିବାକୁ ଇଚ୍ଛା କରୁଥିଲେ ମଧ୍ୟ କୁବ୍ଲାଇ ଖାଁ ତାଙ୍କୁ ଛାଡ଼ି ପାରୁ ନଥିଲେ । ମାତ୍ର କୁବ୍ଲାଇ ଖାଁଙ୍କ ଭାଇ ପାରସ୍ୟ ସମ୍ରାଟଙ୍କ ପତ୍ନୀ ବିୟୋଗ ହେବାରୁ କୁବ୍ଲାଇ ଖାଁ ତାଙ୍କର ଦ୍ୱିତୀୟ ସ୍ତ୍ରୀ ରୂପେ ଏକ ମୋଙ୍ଗଲ ରାଜକନ୍ୟାଙ୍କୁ ପଠାଇବାକୁ ଆୟୋଜନ କଲେ । ମାର୍କୋପୋଲୋ ସେ ରାଜକନ୍ୟାଙ୍କୁ ପାରସ୍ୟରେ ପହଞ୍ଚାଇ ଦେବାର ଦାୟିତ୍ୱ ନେଇ ଜଳପଥରେ ଯାତ୍ରା କଲେ । ପ୍ରାୟ ଦୁଇବର୍ଷ ଜଳଯାତ୍ରା କରିବା ପରେ ସେ ପାରସ୍ୟରେ ପହଞ୍ଚିଲେ ଓ ସେଠାରୁ ସ୍ଥଳ ପଥରେ ଭେନିସ୍‌କୁ ଫେରିଥିଲେ ।

ଇଟାଲୀକୁ ଫେରିଯିବା ପରେ ମାର୍କୋପୋଲୋ ତାଙ୍କର ଚୀନ ଭ୍ରମଣର ଅଭିଜ୍ଞତା ପୁସ୍ତକାକାରରେ ଲେଖିଥିଲେ ଓ ତାହା "ମାର୍କୋପୋଲୋଙ୍କ ଭ୍ରମଣ ବୃତ୍ତାନ୍ତ" ନାମରେ ପ୍ରକାଶିତ ହୋଇ ୟୁରୋପର ନାନା ସ୍ଥାନରେ ପ୍ରଚାରିତ ହୋଇଥିଲା । ୟୁରୋପୀୟମାନେ ତାହା ପାଠକରି ପ୍ରାଚ୍ୟ ଭୂଖଣ୍ଡ ସମ୍ବନ୍ଧରେ ନୂତନ ଜ୍ଞାନ ଲାଭ କରିଥିଲେ ଓ ପ୍ରାଚ୍ୟ ଦେଶରେ ଭ୍ରମଣ କରିବାକୁ ଆଗ୍ରହାନ୍ୱିତ ହୋଇଥିଲେ ।

ସେତେବେଳେ ତୁର୍କୀମାନେ ସ୍ଥଳପଥରେ ଓ ଆରବୀୟମାନେ ଜଳପଥରେ ପ୍ରାଧାନ୍ୟ ବିସ୍ତାର କରିଥିଲେ । ତେଣୁ ୟୁରୋପୀୟ ମାନେ ଭାରତ ଓ ଚୀନ୍ ପ୍ରଭୃତି ପ୍ରାଚ୍ୟ ଦେଶମାନଙ୍କୁ ଯିବାପାଇଁ ନୂତନ ଜଳପଥ ଆବିଷ୍କାର କରିବାକୁ ଚେଷ୍ଟା କରୁଥିଲେ । ମାତ୍ର ମଧ୍ୟଯୁଗରେ ୟୁରୋପୀୟମାନଙ୍କର ଧାରଣା ଥିଲା ଯେ ପୃଥିବୀ ଥାଳିପରି ଚେପ୍‌ଟା । ଜଳପଥରେ ଗଲେ ପୃଥିବୀର ଗୋଟିଏ ସୀମରେ ପହଞ୍ଚି ଲୋକ ପାତାଳକୁ ଖସି ପଡ଼ିବ । ମଧ୍ୟଯୁଗରେ ୟୁରୋପୀୟମାନେ ଜଳପଥରେ ଯାତ୍ରା କରିବାପାଇଁ ଭୟ କରୁଥିଲେ । କିନ୍ତୁ ପୃଥିବୀ ଗୋଲ ବୋଲି ପ୍ରମାଣିତ ହେଲାପରେ ଓ ନାବିକ-କମ୍ପାସ ପ୍ରଚଳନ ହେବା ପରେ ନାବିକମାନେ ଜଳଯାତ୍ରା କରିବାକୁ ଆଉ ଭୟ କଲେ ନାହିଁ । ଫଳରେ ଅନେକ ନୂତନ ଦେଶ ଓ ଜଳପଥମାନ ଆବିଷ୍କୃତ ହେଲା ।

**କଲମ୍ବସ**—ଇଟାଲୀର ଜେନୋଆ ସହରର ନାବିକ କଲମ୍ବସ ପର୍ତ୍ତୁଗୀଜମାନଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ପୃଥିବୀ ଗୋଲ ବୋଲି ଜାଣି ସେ ପର୍ତ୍ତୁଗୀଜ୍‌ମାନଙ୍କୁ କହିଲେ ଯେ, ସିଧା ସଳଖ ପଶ୍ଚିମ ଦିଗରେ ଜାହାଜ ନେଇ ଗଲେ ନିଶ୍ଚୟ

ଚୀନ୍ ଓ ଭାରତରେ ପହଞ୍ଚି ହେବ । ତାଙ୍କର ଏହି କଥା ସେମାନେ ଶୁଣିଲେ ନାହିଁ । ସେ ସ୍ପେନ୍‌ର ରାଜା ଫର୍ଡିନାଣ୍ଡ ଓ ଇସାବେଲାଙ୍କଠାରୁ ସାହାଯ୍ୟ ପାଇ ୧୪୯୨ ଖ୍ରୀଷ୍ଟାବ୍ଦ ଅଗଷ୍ଟମାସ ୩ ତାରିଖରେ ସ୍ପେନ୍ ରାଜାଙ୍କଠାରୁ ତିନୋଟି କ୍ଷୁଦ୍ର ଜାହାଜ ନେଇ ଜଳଯାତ୍ରା ଆରମ୍ଭ କଲେ । ଦୁଇ ମାସ କାଳ ଆଟଲାଣ୍ଟିକ୍ ମହାସାଗରରେ ଜାହାଜ ଚଳାଇ ଅକ୍ଟୋବର ମାସ ୧୨ ତାରିଖ ସକାଳେ ଏକ ଅଜଣା ଦେଶରେ ସେ ପହଞ୍ଚିଲେ । ସେ ତାଙ୍କର ଲକ୍ଷ୍ୟସ୍ଥଳ ଭାରତରେ ପହଞ୍ଚିଛନ୍ତି ବୋଲି ଭାବି ସେଠା ଅଧିବାସୀ ଲାଲ ବର୍ଣ୍ଣର ଲୋକଙ୍କୁ ଲୋହିତ ଭାରତୀୟ ବୋଲି ଆଖ୍ୟା ଦେଲେ । ମାତ୍ର ସେ ଯେ ଆମେରିକା ମହାଦେଶ ଆବିଷ୍କାର କରିଛନ୍ତି ଏ କଥା ମୃତ୍ୟୁ ପର୍ଯ୍ୟନ୍ତ ଜାଣିପାରି ନ ଥିଲେ । ସେ କ୍ୟୁବା ଓ ହେଇଟି ଦ୍ୱୀପକୁ ଯାଇଥିଲେ । ତାଙ୍କର ସ୍ମୃତିରକ୍ଷା ପାଇଁ ଏବେ ସୁଦ୍ଧା ଆମେରିକାର ଆଦିମ ଅଧିବାସୀଙ୍କୁ ଲୋହିତ ଭାରତୀୟ ଓ ତାହାର ଉପକୂଳବର୍ତ୍ତୀ ଦ୍ୱୀପପୁଞ୍ଜକୁ ପଶ୍ଚିମ-ଭାରତୀୟ ଦ୍ୱୀପପୁଞ୍ଜ ବୋଲିଯାଏ । ତାଙ୍କ



[କଲମ୍ବସ୍]

ପରେ ଆମେରିଗୋ ଭେସ୍‌ପୁଚି ନାମକ ଇଟାଲୀୟ ନାବିକ କଲମ୍ବସ ଆବିଷ୍କାର କରିଥିବା ଦେଶରେ ଯାଇ ପହଞ୍ଚିଲେ ( ୧୪୯୫ ଖ୍ରୀଷ୍ଟାବ୍ଦ ) ଓ ତାଙ୍କ ନାମ ଅନୁସାରେ ସେହି ଦେଶର ନାମ ହେଲା 'ଆମେରିକା' ।

**ମାଗେଲାନ୍**—ମାଗେଲାନ୍ ଜଣେ ପର୍ତ୍ତୁଗୀଜ୍ ନାବିକ । ସେ ସ୍ପେନ୍‌ର ରଜାଙ୍କଠାରୁ ସାହାଯ୍ୟ ପାଇ ୧୫୨୯ ଖ୍ରୀଷ୍ଟାବ୍ଦରେ ପାଞ୍ଚଟି ଜାହାଜରେ ୨୮୦ ଜଣ ଲୋକଙ୍କୁ ନେଇ ଆଟଲାଣ୍ଟିକ୍ ମହାସାଗର ଭିତରେ ଜଳଯାତ୍ରା କରିଥିଲେ । ପଶ୍ଚିମ ଆଡ଼କୁ ଜାହାଜ ଚଳାଇ ସେ ଆଟଲାଣ୍ଟିକ୍ ମହାସାଗର ଅତିକ୍ରମ କରି ଦକ୍ଷିଣ ଆମେରିକାର ଦକ୍ଷିଣ ସୀମାରେ ପହଞ୍ଚିଲେ । ତାଙ୍କରି ନାମ ଅନୁସାରେ ଏହା ନିକଟରେ ଥିବା ପ୍ରଣାଳୀଟି "ମାଗେଲାନ ପ୍ରଣାଳୀ" ନାମରେ ନାମିତ ହୋଇଅଛି । ଏହାପରେ ସେ ଯେଉଁ ନୂତନ ମହାସାଗରରେ ପହଞ୍ଚିଲେ ସେଥିରେ ଆଟଲାଣ୍ଟିକ୍ ପରି ଝଡ଼-ତୋଫାନ ପ୍ରଭୃତି ନ ଥିବାରୁ ସେ ତାହା ପ୍ରଶାନ୍ତ ମହାସାଗର ବୋଲି ନାମ ଦେଇଥିଲେ । ଦୀର୍ଘ ୮୯ ଦିନକାଳ ଜଳଯାତ୍ରା କରିବା ପରେ ତାଙ୍କର ଜାହାଜରେ ଖାଦ୍ୟାଭାବ ହେଲା । ଜାହାଜରେ ଲୋକେ କେବଳ ଶୁଖିଲା ଚମଡ଼ା ଖାଇ ବଞ୍ଚି ରହିଲେ । ଏହିପରି ବହୁ କଷ୍ଟରେ ସମୟ କଟାଇ ମାଗେଲାନ୍ ଫିଲିପାଇନ୍ ଦ୍ୱୀପପୁଞ୍ଜରେ ପହଞ୍ଚିଲେ । ଏହି ଦ୍ୱୀପପୁଞ୍ଜର ଆଦିମ ଅଧିବାସୀଙ୍କ ସହିତ ଯୁଦ୍ଧ କରି ମାଗେଲାନ ଓ ତାଙ୍କ ଦଳର ଅଧିକାଂଶ ଲୋକ ପ୍ରାଣ ହରାଇଲେ । ତାଙ୍କର ପାଞ୍ଚଟି ଜାହାଜ ମଧ୍ୟରେ ଭିକ୍ଟୋରିଆ ଜାହାଜଟି ୨୧ ଜଣ ଯାତ୍ରୀଙ୍କୁ ନେଇ ଭାରତ ମହାସାଗରରେ ପ୍ରବେଶ କଲା ଏବଂ ସେଠାରୁ ଆଫ୍ରିକା ଉପକୂଳରେ ଗତିକରି ୧୫୨୯ ଖ୍ରୀଷ୍ଟାବ୍ଦରେ ସ୍ପେନ୍‌ରେ

ପହଞ୍ଚିଲ । ଏହାଦ୍ୱାରା ଭିକ୍ଟୋରିଆ ଜାହାଜରେ ନାବିକମାନେ ପ୍ରଥମଥରପାଇଁ ପୃଥିବୀ ପ୍ରଦକ୍ଷିଣ କରିଥିଲେ । ସେମାନଙ୍କ ଭ୍ରମଣଦ୍ୱାରା ପୃଥିବୀ ଗୋଲ ବୋଲି ପ୍ରତ୍ୟକ୍ଷରୂପେ ପ୍ରମାଣିତ ହେଲା ।

**ଫ୍ରାନସିସ୍ ଡ୍ରେକ**—ସ୍ପେନ୍ ନାବିକମାନେ ଜଳଯାତ୍ରା କରି ଭୌଗୋଳିକ ଆବିଷ୍କାର କରିବା ଫଳରେ ସ୍ପେନ୍ ଅଧିବାସୀ ମେକ୍ସିକୋ ଓ ପେରୁ ରାଜ୍ୟ ଜୟକରି ସେଠାରୁ ବହୁତ ସୁନା, ରୂପା ନିଜ ଦେଶକୁ ନେଇ ଆସିଲେ । ସେତେବେଳେ ସ୍ପେନ୍ ଓ ଇଂଲଣ୍ଡ ମଧ୍ୟରେ ଶତ୍ରୁତା ଥିବାରୁ ଇଂଲଣ୍ଡର ନାବିକମାନେ ସ୍ପେନ୍‌ର ଜାହାଜମାନ ଲୁଣ୍ଠନ କରି ବହୁ ଧନରତ୍ନ ଅପହରଣ କରୁଥିଲେ । ଏହି ସାହସୀ ନାବିକମାନଙ୍କ ମଧ୍ୟରେ ଫ୍ରାନସିସ୍ ଡ୍ରେକ୍ ପ୍ରଧାନ ।

ଇଂଲଣ୍ଡର ଲୋକମାନଙ୍କ ମଧ୍ୟରେ ପୃଥିବୀ ପରିକ୍ରମା କରିବାରେ ଡ୍ରେକ୍ ହିଁ ପ୍ରଥମ ବ୍ୟକ୍ତି । ସେ ୧୫୭୭ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ପ୍ଲାଇମାଉଥ୍ ବନ୍ଦରରୁ ପାଞ୍ଚଟି ଜାହାଜ ଓ ୧୬୦ ଜଣ ଲୋକଙ୍କୁ ନେଇ ଜଳଯାତ୍ରା ଆରମ୍ଭ କରିଥିଲେ । ସେ ମାଜେଲାନ୍ ପ୍ରଣାଳୀ ଅତିକ୍ରମ କରି ପ୍ରଶାନ୍ତ ମହାସାଗରରେ ପ୍ରବେଶ କଲାବେଳକୁ ତାଙ୍କର ନିଜ ଜାହାଜ "ପେଲିକାନ" ବ୍ୟତୀତ ଅନ୍ୟଗୁଡ଼ିକ ନଷ୍ଟ ହୋଇ ଯାଇଥିଲା । ଡ୍ରେକ୍‌ଙ୍କ ଜାହାଜକୁ ସ୍ପେନୀୟ ନାବିକମାନେ ସ୍ପେନୀୟ ଜାହାଜ ବୋଲି ଭାବି ଅଭିବାଦନ ଜଣାଇଥିଲେ । ଡ୍ରେକ୍ କାଳବିଳମ୍ବ ନ କରି ସ୍ପେନ୍ ଜାହାଜଗୁଡ଼ିକ ଲୁଣ୍ଠନ କରି-ଥିଲେ ଓ ପ୍ରଚୁର ସୁନା, ରୂପା ନେଇ ସେଠାରୁ ପଳାଇ ଯାଇ-ଥିଲେ । ସେ ଉତ୍ତମାଶା ଅନ୍ତରୀପ ପ୍ରଦକ୍ଷିଣ କରି ୧୫୮୦ ଖ୍ରୀଷ୍ଟା-ବ୍ଦରେ ଇଂଲଣ୍ଡରେ ପହଞ୍ଚିଲେ । ତାଙ୍କର ଏହି ସାହସିକତା ପାଇଁ ଇଂଲଣ୍ଡର ରାଣୀ ଏଲିଜାବେଥ୍ ତାଙ୍କୁ 'ନାଇଟ୍' ଉପାଧିରେ ଭୂଷିତ

କରିଥିଲେ ଏବଂ ତାଙ୍କର ଜାହାଜକୁ 'ଗୋଲଡ଼େନ୍ ହାଇଣ୍ଡ' (Golden Hind) ଆଖ୍ୟା ଦେଇଥିଲେ ।

ହର୍ଣ୍ଣ ଅନ୍ତରୀପ ଓ ପ୍ରଶାନ୍ତ ମହାସାଗର ବିଷୟରେ ବହୁ ତଥ୍ୟ ଡ୍ରେକ୍‌ଙ୍କ ଅଭିଯାନଦ୍ୱାରା ଜଣାଗଲା । ଏହିସବୁ ଭୌଗୋଳିକ ଆବିଷ୍କ୍ରିୟା ଫଳରେ ବିଭିନ୍ନ ମହାଦେଶମାନଙ୍କୁ ଜଳପଥରେ ଯାତାୟାତରେ ପଥ ପରିଷ୍କାର ଜଣାପଡ଼ିଲା ଓ ମଧ୍ୟଯୁଗରେ ପୃଥିବୀ ସମ୍ବନ୍ଧରେ ଥିବା ଭ୍ରାନ୍ତଧାରଣା ଲୋକଙ୍କ ମନରୁ ଦୂର ହୋଇଗଲା ।

---

## ଚତୁର୍ଦ୍ଦଶ ଅଧ୍ୟାୟ

## ଏସିଆ ଓ ୟୁରୋପରେ ମଙ୍ଗୋଲ ଓ ତୁର୍କମାନଙ୍କର ଦିଗ୍‌ବିଜୟ

**ମଙ୍ଗୋଲ ଜାତି**—ମଙ୍ଗୋଲମାନେ ଉତ୍ତର ଚୀନରେ ଯାଯାବର ଜୀବନଯାପନ କରୁଥିଲେ । ସେମାନେ ଅତ୍ୟନ୍ତ କଷ୍ଟସହିଷ୍ଣୁ ଓ ନିଷ୍ଠୁର ପ୍ରକୃତିର ଲୋକ ଥିଲେ । ତ୍ରୟୋଦଶ ଶତାବ୍ଦୀରେ ବିଖ୍ୟାତ ବୀର ଚେଙ୍ଗିଜ ଖାଁ ଏହି ଯାଯାବର ମଙ୍ଗୋଲ ଜାତିକୁ ଏକ ଦୁର୍ଦ୍ଧର୍ଷ ବୀରଜାତି ରୂପେ ଗଢ଼ିଥିଲେ ।

**ଚେଙ୍ଗିଜ୍ ଖାଁ**—ମଙ୍ଗୋଲମାନଙ୍କର ଏକ ଯାଯାବର ଦଳକୁ **ତାତାର** କୁହାଯାଏ । ଚେଙ୍ଗିଜ୍ ଖାଁ ୧୧୫୫ ଖ୍ରୀଷ୍ଟାବ୍ଦରେ ତାତାର କୁଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ୫୦ ବର୍ଷ ବୟସ ପର୍ଯ୍ୟନ୍ତ ସେ କୌଣସି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରି ନ ଥିଲେ ।

ମାତ୍ର ଏହାପରେ ମଙ୍ଗୋଲ୍ ଜାତିର ବିଭିନ୍ନ ଦଳକୁ ଏକତ୍ର କରି ସ୍ୱେ ସେମାନଙ୍କର ଅଧିଶ୍ୱର ହୋଇ ପାରିଥିଲେ । ସେତେବେଳେ ଚୀନ ଦେଶରେ ବିଭିନ୍ନ ଶାସକମାନଙ୍କ ମଧ୍ୟରେ ଅନ୍ତର୍ବିବାଦ ଲାଗି ରହିଥିଲା । ଚେଙ୍ଗିଜ୍ ଖାଁ ଏହାର ସୁଯୋଗ ନେଇ ଚୀନ ସାମ୍ରାଜ୍ୟର ଉତ୍ତରାଞ୍ଚଳ ଜୟ କରିଥିଲେ । ଏହା ପରେ ସେ ୧୨୧୪ ଖ୍ରୀଷ୍ଟାବ୍ଦରେ ଚୀନ ରାଜଧାନୀ ପେକିଂ ଜୟ କରି ନିଜକୁ ଚୀନର ସମ୍ରାଟ ବୋଲି ଘୋଷଣା କଲେ । ଏହାପରେ ସେ ପଶ୍ଚିମ ଦିଗକୁ ଯାଇ ତୁର୍କିସ୍ଥାନ, ପାରସ୍ୟ, ଆର୍ମେନିଆ ଓ ରୁଷିଆର ଦକ୍ଷିଣାଞ୍ଚଳ ଅଧିକାର କଲେ । ଏହି ସମୟରେ ପ୍ରସିଦ୍ଧ ସମରକନ୍ଦ ତାଙ୍କର ଅଧୀନସ୍ଥ ହୋଇଥିଲା । ଚେଙ୍ଗିଜ୍ ଖାଁ ଭାରତରେ ପ୍ରବେଶ କରି ସିନ୍ଧୁନଦୀ ପର୍ଯ୍ୟନ୍ତ ଅଗ୍ରସର ହୋଇ ଫେରି ଯାଇଥିଲେ । ସେ ୭୨ ବର୍ଷ ବୟସରେ ୧୨୨୭ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କରିଥିଲେ । ମୃତ୍ୟୁ ସମୟରେ ତାଙ୍କ ସାମ୍ରାଜ୍ୟ ଦକ୍ଷିଣ ରୁଷିଆର ନିପର ନଦୀକୂଳରୁ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଚେଙ୍ଗିଜ୍ ଖାଁ ନିରକ୍ଷର ହୋଇ ମଧ୍ୟ ବିଶାଳ ସାମ୍ରାଜ୍ୟକୁ ମୌଖିକ ଆଦେଶଦ୍ୱାରା ସୁବ୍ୟବସ୍ଥିତ-ରୂପେ ଚଳାଉଥିଲେ । ଶାସନର ସୁପରିଚାଳନା ନିମନ୍ତେ ସେ ମନ୍ତ୍ରୀମାନଙ୍କ ପରାମର୍ଶ ଗ୍ରହଣ କରୁଥିଲେ । ମୃତ୍ୟୁପର୍ଯ୍ୟନ୍ତ ସେ ବିଭିନ୍ନ ଅଞ୍ଚଳରେ ତମ୍ବୁ ତଳେ ବାସ କରି ସମସ୍ତ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ ।

**କୁବ୍ଲାଇ ଖାଁ**—ଚେଙ୍ଗିଜ୍ ଖାଁଙ୍କ ପରବର୍ତ୍ତୀ ମଙ୍ଗୋଲ୍ ସମ୍ରାଟମାନଙ୍କ ମଧ୍ୟରେ କୁବ୍ଲାଇ ଖାଁ ପ୍ରଧାନ । ସେ ୧୨୬୦ ଖ୍ରୀଷ୍ଟାବ୍ଦରେ ଚୀନର ସମ୍ରାଟ ରୂପେ ମନୋନୀତ ହୋଇଥିଲେ । ସେ ଚୀନ୍‌କୁ ଅତି ଭଲ ପାଉଥିଲେ । ସେ କାରାକୋରମ୍‌ଠାରୁ ପେକିଂକୁ ରାଜଧାନୀ ଉଠାଇ ନେଇଥିଲେ । ତାଙ୍କ ସମୟରେ

ମଙ୍ଗୋଲ ସାମ୍ରାଜ୍ୟର ପର୍ଶ୍ଚିମ ବିସ୍ତୃତ ହୋଇଥିଲା । ସେ ଚେଙ୍ଗିଜ ଖାଁଙ୍କ ପରି ଦିଗ୍‌ବିଜୟୀ ବୀର ନ ଥିଲେ ମଧ୍ୟ ବିଶାଳ ସାମାଜ୍ୟରେ ସୁଶାସନ ଚଳାଇ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ରାଜତ୍ୱରେ ଭେନିସର ପରିବ୍ରାଜକ ମାର୍କୋପୋଲୋ ଚୀନ ଦେଶକୁ ଆସି ତାଙ୍କ ଦରବାରରେ ସମ୍ମାନିତ ହୋଇଥିଲେ । ୧୨୯୪ ଖ୍ରୀଷ୍ଟାବ୍ଦରେ କୁବ୍‌ଲାଇ ଖାଁଙ୍କର ମୃତ୍ୟୁ ହେଲା । ତାଙ୍କ ପରେ ବିଶାଳ ମଙ୍ଗୋଲ ସାମ୍ରାଜ୍ୟ ଖଣ୍ଡବିଖଣ୍ଡ ହୋଇଗଲା ।

**ତୈମୁରଲଙ୍ଗ**—୧୩୬୯ ଖ୍ରୀଷ୍ଟାବ୍ଦରେ ତୈମୁରଲଙ୍ଗ ନାମରେ ଜଣେ ମଙ୍ଗୋଲ ବୀର ପଶ୍ଚିମ ତୁର୍କିସ୍ଥାନର ଶାସକ ହେଲେ । ତାଙ୍କ ସାମ୍ରାଜ୍ୟ ଏସିଆ ମାଇନରଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲେ । ସେ ଅତ୍ୟନ୍ତ ନୃଶଂସ ଓ ରକ୍ତପିପାସୁ ଥିଲେ । ୧୩୯୮ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ଆକ୍ରମଣ କରି ସେ ଦିଲ୍ଲୀ ସହରକୁ ଲୁଣ୍ଠନ କରିଥିଲେ ଓ ଅସଂଖ୍ୟ ଲୋକଙ୍କୁ ହତ୍ୟା କରିଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କ ସାମ୍ରାଜ୍ୟ ଖଣ୍ଡବିଖଣ୍ଡ ହୋଇଗଲା ।

**ତୁର୍କଜାତି** —ତୁର୍କମାନେ ମଙ୍ଗୋଲମାନଙ୍କପରି ଅନ୍ୟ ଏକ ଯାଯାବର ଜାତିର ଲୋକ । ଏମାନଙ୍କ ରାଜ୍ୟକୁ ତୁର୍କିସ୍ଥାନ କୁହା ଯାଉଥିଲା । ଅଷ୍ଟମ ଶତାବ୍ଦୀରେ ଖଲିଫାଙ୍କ ସୈନ୍ୟମାନେ ତୁର୍କସ୍ଥାନ ଜୟ କରି ତୁର୍କିମାନଙ୍କୁ ଇସଲାମଧର୍ମରେ ଦୀକ୍ଷିତ କଲେ । ଖଲିଫାମାନେ ଦୁର୍ବଳ ହୋଇ ପଡ଼ିବାରୁ ଏକାଦଶ ଶତାବ୍ଦୀରେ ତୁର୍କିଜାତିର ଏକ ଦଳର ନେତା ଖଲିଫାଙ୍କଠାରୁ ତୁର୍କିସ୍ଥାନର ଶାସନ କ୍ଷମତା ନେଇ ଯାଇଥିଲେ । ଏହି ଦଳକୁ "ସେଲ୍‌ଜ ତୁର୍କ" କହନ୍ତି । ସେଲ୍‌ଜ ତୁର୍କମାନେ ଶକ୍ତିଶାଳୀ ଥିବାରୁ ପୁଣି ଏକ ମୁସଲମାନ ସାମ୍ରାଜ୍ୟ ମୁଣ୍ଡ ଟେକିଥିଲା । ସେଲ୍‌ଜ ତୁର୍କମାନେ ୧୦୭୬

ଖ୍ରୀଷ୍ଟାବ୍ଦରେ ପାଲେଷ୍ଟାଇନ ଅଧିକାର କରି ଖ୍ରୀଷ୍ଟଧର୍ମାବଲମ୍ବୀମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର ଚଳାଇଲେ ।

**କ୍ରୁସେଡ଼ (ଧର୍ମଯୁଦ୍ଧ)**—ତୁର୍କମାନଙ୍କ ଅତ୍ୟାଚାର ଫଳରେ ଖ୍ରୀଷ୍ଟିୟାନ ଓ ତୁର୍କମାନଙ୍କ ମଧ୍ୟରେ ଦୀର୍ଘକାଳ ବ୍ୟାପୀ ଯୁଦ୍ଧ ଲାଗି ରହିଥିଲା । ଖ୍ରୀଷ୍ଟିୟାନମାନଙ୍କର ପ୍ରଧାନ ଧର୍ମଗୁରୁ ପୋପ୍‌ଙ୍କ ଆହ୍ୱାନ କ୍ରମେ ୟୁରୋପର ଖ୍ରୀଷ୍ଟିୟାନ ସୈନ୍ୟମାନେ ଜେରୁଜେଲମ୍ ଅଭିମୁଖରେ ଯୁଦ୍ଧଯାତ୍ରା କଲେ । ସେମାନେ ସମସ୍ତେ ଖ୍ରୀଷ୍ଟିୟାନ ଧର୍ମର ସଙ୍କେତ କ୍ରସ୍ ଧାରଣ କରି ଯୁଦ୍ଧକୁ ଯାଉଥିବାରୁ ଏହି ଯୁଦ୍ଧର ନାମ କ୍ରୁସେଡ଼ ବା ଧର୍ମଯୁଦ୍ଧ ଅଟେ । ୧୦୯୬ ଖ୍ରୀଷ୍ଟାବ୍ଦରୁ ୧୨୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରାୟ ଦୁଇଶହ ବର୍ଷ ମଧ୍ୟରେ ଆଠଥର କ୍ରୁସେଡ୍ ଯୁଦ୍ଧ ହୋଇଥିଲା । ଖ୍ରୀଷ୍ଟିୟାନମାନେ ଜେରୁଜେଲମ ଅଧିକାର କରି ନେଇଥିଲେ; କିନ୍ତୁ କିଛିଦିନ ପରେ ତୁର୍କମାନଙ୍କ ସୁଲତାନ ସାଲାଦିନ୍ ପୁଣି ୧୧୮୭ ଖ୍ରୀଷ୍ଟାବ୍ଦରେ ଜେରୁଜେଲମ ଅଧିକାର କରିନେଲେ । ଏହାପରେ ଆହୁରି କେତୋଟି କ୍ରୁସେଡ଼ ଯୁଦ୍ଧ ହୋଇଥିଲେ ମଧ୍ୟ ଖ୍ରୀଷ୍ଟିୟାନମାନେ ଜେରୁଜେଲମ ଅଧିକାର କରିବାକୁ ସମର୍ଥ ହୋଇ ନ ଥିଲେ ।

**ଅଟୋମାନ୍ ତୁର୍କ**—ତ୍ରୟୋଦଶ ଶତାବ୍ଦୀରେ ଚେଙ୍ଗିଜ୍ ଖାଁ ତୁର୍କିସ୍ଥାନ ଆକ୍ରମଣ କଲାବେଳେ ଦଳେ ତୁର୍କ ପଳାଇଆସି ଏସିଆ ମାଇନରରେ ଆଶ୍ରୟ ନେଇଥିଲେ । ୧୩୦୦ ଖ୍ରୀଷ୍ଟାବ୍ଦରେ ଏହି ଦଳର ନେତା ଓଥମାନ୍ ସେଲ୍‌ଜ ତୁର୍କମାନଙ୍କୁ ଜୟକରି ଏକ ନୂତନ ସାମ୍ରାଜ୍ୟ ସ୍ଥାପନ କଲେ । ଦଳର ନେତା ଓଥମାନଙ୍କ ନାମାନୁସାରେ ଏହି ଦଳ ଓଥମାନ ବା ଅଟୋମାନ ତୁର୍କନାମରେ ପରିଚିତ ।

ଅଟୋମାନ୍ ତୁର୍କମାନେ ଏସିଆ ମାଇନରରେ ପ୍ରଭୃତି ବସ୍ତାରକର ମାସିଡ଼ନ୍, ସର୍ବିଆ ଓ ବୁଲ୍‌ଗେରିଆ ପ୍ରଭୃତି ୟୁରୋପୀୟ ରାଜ୍ୟ ଜୟ କରିଥିଲେ । ୧୪୫୩ ଖ୍ରୀଷ୍ଟାବ୍ଦରେ ସୁଲତାନ ଦ୍ୱିତୀୟ ମହମ୍ମଦ ଖ୍ରୀଷ୍ଟିୟାନମାନଙ୍କ ଅଧୀନରୁ କନ୍‌ଷ୍ଟାଣ୍ଟିନୋପଲ ଅଧିକାର କରିନେଲେ । ଏହାଦ୍ୱାରା ପ୍ରାଚୀନ ରୋମାନ ସାମ୍ରାଜ୍ୟର ପତନ ହେଲା । କନ୍‌ଷ୍ଟାଣ୍ଟିନୋପଲ୍‌ରେ ବାସକରୁଥିବା ଅସଂଖ୍ୟ ଜ୍ଞାନୀ ପଣ୍ଡିତମାନେ ତୁର୍କମାନଙ୍କ ଅତ୍ୟାଚାରର ଫଳରେ ରୋମାନ୍ ଓ ଗ୍ରୀକ୍ ଗ୍ରନ୍ଥମାନ ନେଇ ୟୁରୋପର ବଭିନ୍ନ ସ୍ଥାନକୁ ପଳାଇଯାଇ ସେହି ସ୍ଥାନରେ ଜ୍ଞାନ-ପ୍ରଚାର କରିବାକୁ ଲାଗିଲେ ।

ଅଟୋମାନ୍ ତୁର୍କମାନଙ୍କର ସାମ୍ରାଜ୍ୟ ହଙ୍ଗେରୀଠାରୁ ବାଗ୍‌ଦାଦ୍ ପର୍ଯ୍ୟନ୍ତ ଓ ଦକ୍ଷିଣରେ ମିଶର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତୁର୍କମାନେ ଏକ ଶକ୍ତିଶାଳୀ ନୌବାହିନୀ ଗଢ଼ି ଭୂମଧ୍ୟ-ସାଗରରେ କ୍ଷମତା ବିସ୍ତାର କରିଥିଲେ । କାଳକ୍ରମେ ଅଟୋମାନ୍ ତୁର୍କମାନଙ୍କ କ୍ଷମତା ହ୍ରାସ ପାଇଲା । ଗ୍ରୀକ୍‌ମାନେ ତୁର୍କମାନଙ୍କ ବିରୁଦ୍ଧରେ ଯୁଦ୍ଧକରି ୧୮୨୯ ଖ୍ରୀଷ୍ଟାବ୍ଦରେ ସ୍ୱାଧୀନ ହେଲେ ।

---

## ପଞ୍ଚଦଶ ଅଧ୍ୟାୟ

## ଧର୍ମସଂସ୍କାର—ମାର୍ଟିନ ଲୁଥର

ରୋମ୍ ସମ୍ରାଟ କନଷ୍ଟାଣ୍ଟାଇନଙ୍କ ରାଜତ୍ୱକାଳରୁ ରୋମ୍ ଖ୍ରୀଷ୍ଟଧର୍ମର ପ୍ରଧାନ ପୀଠ ହୋଇଥିଲା ଓ ରୋମ୍‌ରେ ଥିବା ପ୍ରଧାନ ଧର୍ମଯାଜକ ଖ୍ରୀଷ୍ଟଧର୍ମର 'ପାପା' ବା ପୋପ୍ ରୂପେ

ଅଭିହିତ ହେଲେ । ଖ୍ରୀଷ୍ଟିୟାନମାନେ ପୋପ୍‌ଙ୍କୁ ଦେବତା ସଦୃଶ ମନେ କରୁଥିଲେ ଓ ତାଙ୍କର ନିର୍ଦ୍ଦେଶ ମାନି ଚଳୁଥିଲେ । ଖ୍ରୀଷ୍ଟଧର୍ମରେ କ୍ରମେ କୁସଂସ୍କାର ଓ ଦୁର୍ନୀତି ପ୍ରବେଶ କଲା । ପୋପ୍ ଓ ଅନ୍ୟାନ୍ୟ ଧର୍ମଯାଜକମାନେ ଭୋଗ ବିଳାସରେ ମାତିବାରୁ ସେମାନଙ୍କର ନୈତିକ ଅବନତି ଘଟିଲା ଓ ଧର୍ମଯାଜକମାନେ ସମାଜରେ ପ୍ରଭୁତ୍ୱ ବିସ୍ତାର କରିବାପାଇଁ ଧର୍ମନୀତି ଅପେକ୍ଷା ରାଜନୀତିରେ ବେଶି ସମୟ କଟାଇଲେ ।

ପୋପ୍ ହିବ୍ରୁ ଭାଷାରେ ଲିଖିତ ବାଇବେଲକୁ ଲାଟିନ୍ ଭାଷାରେ ଲେଖାଇବାରୁ ସାଧାରଣ ଲୋକେ ନିଜେ ନିଜେ ବାଇବେଲ ପଢ଼ି ପାରିଲେ ନାହିଁ । ଏହାଦ୍ୱାରା ପୋପ୍‌ଙ୍କର କ୍ଷମତା ବଢ଼ିଲା । ପୋପ ଓ ଧର୍ମଯାଜକମାନେ ଖ୍ରୀଷ୍ଟଧର୍ମାବଲମ୍ବୀ ଦେଶର ବହୁ ଧନ ସମ୍ପତ୍ତି କୌଶଳ କ୍ରମେ ଧର୍ମ ସମ୍ପ୍ରଦାୟ ଅଧୀନକୁ ନେଇ ଆସିଲେ । ରାଜାମାନଙ୍କ ଉପରେ ମଧ୍ୟ ସେମାନଙ୍କ ପ୍ରଭାବ ପଡ଼ିଲା । ଧର୍ମ ଯାଜକ ଓ ପୋପ୍‌ଙ୍କ ସମ୍ପତ୍ତି ଉପରେ ରାଜାମାନଙ୍କର କୌଣସି ଅଧିକାର ରହିଲା ନାହିଁ । ଯେଉଁ ରାଜାମାନେ ପୋପ୍‌ଙ୍କ କ୍ଷମତା ଅସ୍ୱୀକାର କରୁଥିଲେ, ପୋପ୍ ଅନ୍ୟ ରାଜାମାନଙ୍କୁ ତାଙ୍କ ବିରୁଦ୍ଧରେ ଯୁଦ୍ଧ କରିବାପାଇଁ ପ୍ରବର୍ତ୍ତାଇ ଥିଲେ । ପୋପ୍ ଲୋକମାନଙ୍କ ମଧ୍ୟରେ ଥିବା ଅନ୍ଧବିଶ୍ୱାସର ସୁଯୋଗ ନେଇ ସେମାନଙ୍କଠାରୁ ଅର୍ଥ ଆଦାୟ କରିବାପାଇଁ ବହୁ ସଂଖ୍ୟାରେ ଅବ୍ୟାହତି ପତ୍ର (Indulgence) ଛପାଇ ଲୋକମାନଙ୍କୁ ବିକ୍ରି କଲେ । ସେ ପ୍ରଚାର କରୁଥିଲେ, ଅବ୍ୟାହତିପତ୍ର ଯେଉଁ ବ୍ୟକ୍ତି କ୍ରୟ କରିବ, ମୃତ୍ୟୁପରେ ସେ ସିଧା ସ୍ୱର୍ଗକୁ ଯାଇପାରିବ ।

ୟୁରୋପରେ ଜ୍ଞାନର ନବୀକରଣ ହେତୁ ଯେଉଁ ନୂତନ ଜାଗରଣ ଦେଖାଗଲା ତଦ୍ଦ୍ୱାରା କେତେକ ଜ୍ଞାନୀଲୋକ ସଭାସମିତି

ଓ ପତ୍ରପତ୍ରିକାରେ ଧର୍ମଯାଜକମାନଙ୍କ ଅଙ୍କତାର ତୀବ୍ର ସମାଲୋଚନା କଲେ । ଏଣେ ରାଜାମାନେ ମଧ୍ୟ ପୋପଙ୍କ ଯଥେଚ୍ଛାଚାରିତାକୁ ସହ୍ୟକରି ନ ପାରି ସେମାନେ ଭୋଗ କରୁଥିବା ସମ୍ପତ୍ତି ଓ ସୁବିଧାଗୁଡ଼ିକରୁ ସେମାନଙ୍କୁ ବଞ୍ଚିତ କଲେ ଏବଂ ରାଜକ୍ଷମତା ପୋପ୍‌ଙ୍କ କ୍ଷମତା ଅପେକ୍ଷା ଅଧିକ ବୋଲି ପରିଚୟ ଦେବାକୁ ଚେଷ୍ଟା କଲେ । ଏହିପରି ଭାବରେ ରାଜା ଓ ପ୍ରଜା ସମସ୍ତେ ପୋପ୍ ଓ ଧର୍ମଯାଜକମାନଙ୍କୁ ଘୃଣା କରିବାକୁ ଲାଗିଲେ ।

**ଜନ୍‌ଉଇକ୍ଲିଫ୍**—ଚତୁର୍ଦ୍ଦଶ ଶତାବ୍ଦୀରେ ଜନ୍ ଉଇକ୍ଲିଫ୍ ନାମକ ଅକସଫୋର୍ଡ଼ର ଜଣେ ଅଧ୍ୟାପକ ଧର୍ମ ସଂସ୍କାର ପାଇଁ ଆନ୍ଦୋଳନ କରିଥିଲେ । ସେ ଲଣ୍ଡନର ଜଣେ ଧର୍ମଯାଜକ ଥିଲେ । ତଥାପି ପୋପ୍ ଓ ଧର୍ମଯାଜକମାନଙ୍କର ବିଳାସ ଏବଂ ଅର୍ଥଲିପ୍ସାକୁ ଘୃଣା କରୁଥିଲେ । ସେ ବାଇବେଲ୍‌କୁ ସରଳ ଇଂରାଜୀ ଭାଷାରେ ଅନୁବାଦ କରିଥିଲେ । ଏହା ଫଳରେ ସାଧାରଣ ଲୋକେ ବାଇବେଲ୍ ପଢ଼ି ଯୀଶୁଖ୍ରୀଷ୍ଟଙ୍କ ଉପଦେଶାବଳୀ ବୁଝିପାରିଲେ । ତେଣୁ ସେମାନେ କ୍ଷମତା ଓ ଅର୍ଥଲୋଭୀ ପୋପ୍‌ଙ୍କୁ ଓ ଧର୍ମଯାଜକମାନଙ୍କୁ ସମାଲୋଚନା କରିବାକୁ ଲାଗିଲେ । ଧର୍ମସଂସ୍କାର ପାଇଁ ଜନ୍‌ଉଇକ୍ଲିଫ୍‌ଙ୍କର ଏହି ପ୍ରାଥମିକ ଉଦ୍ୟମଯୋଗୁଁ ତାଙ୍କୁ "ଧର୍ମ ସଂସ୍କାରର ପ୍ରଭାତ ତାରା" ( The morning star of Reformation ) ବୋଲି କୁହାଯାଏ ।



[ ଜନ୍ ଉଇକ୍ଲିଫ୍ ]

ସେତେବେଳକୁ ମୁଦ୍ରାଯନ୍ତ୍ର ଉଦ୍ଭାବିତ ହୋଇଥିବାରୁ ୟୁରୋପରେ ଚିନ୍ତାଶୀଳ ବ୍ୟକ୍ତିମାନେ ସେମାନଙ୍କ ସ୍ୱାଧୀନ ଚିନ୍ତାଧାରା ସହଜରେ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିପାରିଲେ । ଇରାସ୍‌ମସ୍ ନାମକ ହଲାଣ୍ଡର ଜଣେ ପଣ୍ଡିତ ୧୫୧୯ ଖ୍ରୀଷ୍ଟାବ୍ଦରେ (Praise of Folly) ନାମକ ପୁସ୍ତକ ପ୍ରଣୟନ କରିଥିଲେ । ସେଥିରେ ସେ ଧର୍ମଯାଜକମାନଙ୍କର ନିକୃଷ୍ଟ ମୂର୍ଖତା, ବ୍ୟଭିଚାର ଓ ଅକର୍ମଣ୍ୟତାକୁ ଏପରି ଭାବରେ ବିଦ୍ରୂପ କରିଥିଲେ ଯେ ତାହାକୁ ପଢ଼ି ଜନସାଧାରଣଙ୍କ ମନରୁ ଧର୍ମଯାଜକଙ୍କ ପ୍ରତି ଭକ୍ତି ହ୍ରାସ ପାଇବାକୁ ଲାଗିଲା । ସେହି ସମୟରେ ମାର୍ଟିନ ଲୁଥର ନାମକ ଜଣେ ବ୍ୟକ୍ତି ନିର୍ଭୀକ ଭାବରେ ଧର୍ମବିପ୍ଳବ ସୃଷ୍ଟି କରିଥିଲେ ।

**ମାର୍ଟିନ ଲୁଥର**—ମାର୍ଟିନ୍ ଲୁଥର ୧୪୮୩ ଖ୍ରୀଷ୍ଟାବ୍ଦରେ ଜର୍ମାନୀ ଦେଶରେ ଜନ୍ମଗ୍ରହଣ କରିଥିଲେ । ସେ ଇରଫର୍ଟ୍ ବିଶ୍ୱ-ବିଦ୍ୟାଳୟରେ ଆଇନ ବିଦ୍ୟା ପଢ଼ି ସେଠାରେ ଖ୍ୟାତି ଅର୍ଜନ କରିଥିଲେ । ଧର୍ମଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତେଣୁ ସେ ୧୫୦୮ ଖ୍ରୀଷ୍ଟାବ୍ଦରେ ଉଇଟେନବର୍ଗ ବିଶ୍ୱବିଦ୍ୟାଳୟରେ ଧର୍ମଶାସ୍ତ୍ର ଅଧ୍ୟାପକରୂପେ ନିଯୁକ୍ତ ହୋଇଥିଲେ । ଧର୍ମଯାଜକ-ମାନଙ୍କର ଭୋଗ ବିଳାସ ଓ ଅଜ୍ଞତାକୁ ସେ କଠୋର ଭାବରେ ସମାଲୋଚନା କରୁଥିଲେ । ସେତେବେଳେ ପୋପ୍ ରୋମ୍‌ଠାରେ ସେଣ୍ଟପିଟରଗୀର୍ଜା ବହୁ ଅର୍ଥବ୍ୟୟରେ ନିର୍ମାଣ କରାଉଥିଲେ । ସେଥିପାଇଁ ସେ ଅର୍ଥସଂଗ୍ରହ କରିବା ପାଇଁ ଅବ୍ୟାହତି ପତ୍ର ବିକ୍ରୟ କରିବାର ବନ୍ଦୋବସ୍ତ କରିଥିଲେ । ନିର୍ଭୀକମନା ଲୁଥର ଧାହସର ସହିତ ଅବ୍ୟାହତି ପତ୍ର ବିରୁଦ୍ଧରେ ପଞ୍ଚ ପ୍ରତିବାଦ ପତ୍ର ଲେଖି ଉଇଟାନବର୍ଗ ଗୀର୍ଜାର ଫାଟକରେ ମାରିଦେଲେ ଓ ତାହା

ଅବଲମ୍ବେ ପତ୍ର ପତ୍ରିକାଦ୍ୱାରା ସାରା ଦେଶରେ ପ୍ରଚାରିତ ହେଲା । ସେଥିରେ ସେ ପ୍ରକାଶ କରିଥିଲେ ଯେ ଇଶ୍ୱର. ଅନୁତାପଦ୍ୱାରା ହିଁ



[ ମାର୍ଟିନ୍ ଲୁଥର୍ ]

ମନୁଷ୍ୟ ତାହାର କୃତପାପଗୁଡ଼ିକରୁ ମୁକ୍ତିଲାଭ କରିପାରେ । ମୁକ୍ତିକୁ ଅର୍ଥଦ୍ୱାରା କ୍ରୟ କରାଯାଇ ନ ପାରେ ।

**ଲୁଥରଙ୍କ ଧର୍ମ ସଂସ୍କାର**—ଲୁଥର ଭ୍ରଇଟାନବର୍ଗ ଦୁର୍ଗରେ କିଛିକାଳ ରହି ବାଇବେଲକୁ ଜର୍ମାନ ଭାଷାରେ ଅନୁବାଦ କରିଥିଲେ ଓ ପୋପ୍‌ଙ୍କ ବିରୁଦ୍ଧରେ ଅନେକ ପ୍ରଚାରପତ୍ର ଲେଖିଥିଲେ । ପୋପ୍ ଲୁଥରଙ୍କୁ ଦମନ କରିବା ନିମନ୍ତେ ଯେତେ ଚେଷ୍ଟା କଲେ ମଧ୍ୟ ସେଗୁଡ଼ିକ ସବୁ ବ୍ୟର୍ଥ ହୋଇଥିଲା । ଲୋକେ ଜର୍ମାନ ଭାଷାରେ ଲିଖିତ ବାଇବେଲ୍‌କୁ ପଢ଼ି ପୋପ୍ ଓ କ୍ୟାଥଲିକ୍ ଧର୍ମର ନାନା ଦୁର୍ନୀତି ଜାଣିଲେ ଏବଂ କ୍ୟାଥଲିକ୍ ଧର୍ମର ବିରୁଦ୍ଧାଚରଣ କଲେ । ଏହା ଫଳରେ ଖ୍ରୀଷ୍ଟଧର୍ମାବଲମ୍ବୀମାନେ ଦୁଇ

ଭାଗରେ ବିଭକ୍ତ ହୋଇଗଲେ । ଯେଉଁମାନେ ପୋପ୍‌ଙ୍କ ବିରୁଦ୍ଧରେ ଲୁଥରଙ୍କ ମତ ଗ୍ରହଣ କଲେ ସେମାନଙ୍କୁ ପ୍ରତିବାଦ ପନ୍ଥୀ (Protestant) କୁହାଗଲା ଓ ତାଙ୍କ ଧର୍ମକୁ (Protestantism) କୁହାଗଲା । ଏହି ପ୍ରତିବାଦପନ୍ଥୀମାନଙ୍କର ଆନ୍ଦୋଳନକୁ ଧର୍ମସଂସ୍କାର (Reformation) କୁହାଗଲା । ଯେଉଁମାନେ ରୋମ୍‌ର ପୋପ୍‌ଙ୍କ ପ୍ରାଧାନ୍ୟ ସ୍ୱୀକାର କଲେ ସେମାନେ ରୋମାନ୍ କ୍ୟାଥଲିକ୍ ନାମରେ ପରିଚିତ ହେଲେ ।

ଲୁଥର ଜର୍ମାନୀରେ ପୋପ୍‌ଙ୍କ ବିରୁଦ୍ଧରେ ଧର୍ମବିପ୍ଳବ ଚଳାଇଥିବାବେଳେ ସୁଇଜରଲଣ୍ଡର ଜୁରିକ୍‌ଠାରେ ଜୁଇଙ୍ଗଲି ନାମକ ଜଣେ ପ୍ରଚାରକ ପୋପ୍‌ଙ୍କ ଦୁର୍ନୀତି ବିରୁଦ୍ଧରେ ଦୃଢ଼ ପ୍ରତିବାଦ ଚଳାଇଥିଲେ । ଲୁଥର ଓ ଜୁଇଙ୍ଗଲିଙ୍କ ପ୍ରଚାରରେ ଅନୁପ୍ରାଣିତ ହୋଇ ଜନ୍ କାଲଭିନ୍ ନାମକ ଜଣେ ଫରାସୀ ସଂସ୍କାରକ ଜେନିଭାଠାରେ ୧୫୩୬ ଖ୍ରୀଷ୍ଟାବ୍ଦରେ ପୋପ୍‌ଙ୍କ ବିରୁଦ୍ଧରେ ପ୍ରଚାର ଆରମ୍ଭ କରିଥିଲେ ।

ପୋପ୍ କ୍ୟାଥଲିକ୍ ଧର୍ମର କେତେକ ପରିବର୍ତ୍ତନ କରି ପ୍ରତିବାଦପନ୍ଥୀଙ୍କ ବିରୁଦ୍ଧରେ ଜେସୁଇଟମାନଙ୍କଦ୍ୱାରା ଆନ୍ଦୋଳନ ଚଳାଇଥିଲେ । ତାଙ୍କର ଏହି ଆନ୍ଦୋଳନକୁ "ସଂସ୍କାର ବିରୋଧୀ ଆନ୍ଦୋଳନ" କୁହାଯାଏ । ୟୁରୋପର ଏହି ଧର୍ମସଂସ୍କାର ଆନ୍ଦୋଳନ ଫଳରେ ପୋପ୍ ଓ ସମ୍ରାଟଙ୍କ ପ୍ରତିଷ୍ଠିତ ଖ୍ରୀଷ୍ଟରାଜ୍ୟ ଲୋପ ପାଇଲା ଓ ତାହା ସ୍ଥାନରେ ନୂତନ ଭାବଧାରାରେ ଅନୁପ୍ରାଣୀତ ହୋଇ ଜାତୀୟ ରାଜ୍ୟମାନ ସ୍ଥାପିତ ହେଲା । ଏହା ଫଳରେ ୟୁରୋପରେ ମଧ୍ୟ ଯୁଗର ଅବସାନ ଘଟି ଆଧୁନିକ ଯୁଗ ଆରମ୍ଭ ହେଲା ।

———

# ଷୋଡ଼ଶ ଅଧ୍ୟାୟ

## ବିଜ୍ଞାନର ପୁନର୍ଜାଗରଣ

ପ୍ରାଚୀନ କାଳରେ ଗ୍ରୀକ୍ ଓ ରୋମାନ୍‌ମାନେ ସାହିତ୍ୟ ଓ ଦର୍ଶନର ଚର୍ଚ୍ଚା ସଙ୍ଗେ ସଙ୍ଗେ ବିଜ୍ଞାନର ମଧ୍ୟ ଚର୍ଚ୍ଚା କରିଥିଲେ । ଛାପାକଳର ପ୍ରସାର ଓ କନଷ୍ଟାଣ୍ଟିନୋପଲ୍‌ରୁ ୟୁରୋପର ବିଭିନ୍ନ ଅଂଶକୁ ପଳାଇଯାଇଥିବା ଗ୍ରୀକ୍ ଓ ରୋମାନ ପଣ୍ଡିତମାନଙ୍କର ପ୍ରାଚୀନ ଜ୍ଞାନ ବିଜ୍ଞାନ ଚର୍ଚ୍ଚା ଫଳରେ ୟୁରୋପରେ ନବଜାଗରଣ ଆରମ୍ଭ ହେଲା । ପ୍ରମାଣ ଭିତ୍ତିରେ ପ୍ରତିଷ୍ଠିତ ସତ୍ୟକୁ ସେମାନେ ସତ୍ୟ ବୋଲି ଗ୍ରହଣ କରିବାକୁ ଲାଗିଲେ । ଆଧୁନିକ ଯୁଗ ଆରମ୍ଭ ସମୟରେ ଯେଉଁ ମନୀଷୀମାନେ ନୂତନ ବୈଜ୍ଞାନିକ ତଥ୍ୟ ଉଦ୍ଭାବନ କରି ବିଜ୍ଞାନର ଉନ୍ନୟନ ଘଟାଇଥିଲେ, ସେମାନଙ୍କ ମଧ୍ୟରେ କୋପରନିକସ୍, ଗାଲିଲିଓ, ନିଉଟନ୍ ଓ କାର୍ଭେଙ୍କ ନାମ ଉଲ୍ଲେଖ-ଯୋଗ୍ୟ ।

**କୋପରନିକସ୍**—(୧୪୭୩ ଖ୍ରୀ. ଅ.—୧୫୪୩ ଖ୍ରୀ. ଅ.) କୋପରନିକସ୍ ପୋଲାଣ୍ଡ ଦେଶର ଜଣେ ଧର୍ମଯାଜକ ଓ ଜ୍ୟୋତିର୍ବିଦ୍ ଥିଲେ । ସେ ଆକାଶର ନକ୍ଷତ୍ରମାନଙ୍କର ଗତିବିଧି ଲକ୍ଷ୍ୟକରି ପ୍ରମାଣ କରିଥିଲେ ଯେ ପୃଥିବୀ ସୂର୍ଯ୍ୟ ଅପେକ୍ଷା ଅନେକ ଗୁଣରେ ଶ୍ରେଷ୍ଠ । ସୂର୍ଯ୍ୟ ସ୍ଥିର ଅଛନ୍ତି ଏବଂ ପୃଥିବୀ ଓ ଅନ୍ୟାନ୍ୟ ଗ୍ରହମାନେ ସୂର୍ଯ୍ୟଙ୍କ ଚାରିପାଖରେ ଘୂରୁଛନ୍ତି । ଏହି ନୂତନ ତଥ୍ୟ ପ୍ରକାଶ ପାଇବା ଫଳରେ ଲୋକେ ବୁଝିଲେ ଯେ ପୃଥିବୀର ଦୈନିକ ଘୂର୍ଣ୍ଣନ ଫଳରେ ଦିନରାତି ହେଉଅଛି । କୋପରନିକସ୍ ତାଙ୍କର ନୂତନ ତଥ୍ୟ ପ୍ରକାଶ କରିବାଦ୍ୱାରା ପୋପ୍‌ଙ୍କର ସମ୍ମାନହାନି ଘଟିଲା । ତେଣୁ ସେ କୋପରନିକସ୍‌ଙ୍କୁ ଧର୍ମଦ୍ରୋହୀ ବୋଲି ଘୋଷଣା କଲେ । ସୌଭାଗ୍ୟବଶତଃ ସେ ପ୍ରାଣଦଣ୍ଡରୁ

ରକ୍ଷା ମାଇଥିଲେ । ଅଳ୍ପକାଳ ମଧ୍ୟରେ ତାଙ୍କର ମତ ୟୁରୋପରେ ପ୍ରଚଳିତ ହୋଇଥିଲା । ତେଣୁ କୋପରନିକସ୍‌ଙ୍କୁ ଆଧୁନିକ ଜ୍ୟୋତିର୍ବିଦ୍ୟାର ଜନ୍ମଦାତା ବୋଲି କୁହାଯାଏ ।

**ଗାଲିଲିଓ**—( ୧୫୬୪ ଖ୍ରୀ. ଅ.—୧୬୪୨ ଖ୍ରୀ. ଅ. )— ଇଟାଲିର ଜ୍ୟୋତିର୍ବିଦ ପଣ୍ଡିତ ଗାଲିଲିଓ ପିସା ବିଶ୍ୱବିଦ୍ୟାଳୟରେ ଗଣିତ ଅଧ୍ୟାପକ ରୂପେ କାର୍ଯ୍ୟ କରୁଥିଲେ । ସେହି ସମୟରେ ସେ ଦୂରବୀକ୍ଷଣ ଯନ୍ତ୍ର ଉଦ୍ଭାବନ କରି ତାହା ସାହାଯ୍ୟରେ ସୂର୍ଯ୍ୟ, ଚନ୍ଦ୍ର ଓ ଗ୍ରହ ନକ୍ଷତ୍ରମାନଙ୍କର ଗତିବିଧି ଲକ୍ଷ୍ୟ କରୁଥିଲେ ଏବଂ ସେମାନଙ୍କ ସମ୍ବନ୍ଧରେ ଅନେକ ତଥ୍ୟ ନିର୍ଣ୍ଣୟ କରିଥିଲେ । ସେ ସାହସର ସହିତ ଘୋଷଣା କଲେ ଯେ କୋପର ନିକସ୍‌ଙ୍କ ତଥ୍ୟ ନିର୍ଭୁଲ । ପୋପ୍ ସେଥିପାଇଁ ତାଙ୍କୁ ଧର୍ମଦ୍ରୋହୀ ବୋଲି ଘୋଷଣା କରିଥିଲେ । ଦଣ୍ଡରୁ ରକ୍ଷା ପାଇବା ପାଇଁ ବାଧ୍ୟହୋଇ ସେ ତାହା ପ୍ରତ୍ୟାହାର କରି ନେଇଥିଲେ ।



[ ଗାଲିଲିଓ ]

**ହାର୍ଭେ**—( ୧୫୭୮ ଖ୍ରୀ. ଅ.—୧୬୫୭ ଖ୍ରୀ. ଅ. )— ବୈଜ୍ଞାନିକ ହାର୍ଭେ ୧୫୭୮ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡରେ ଜନ୍ମଗ୍ରହଣ

କରିଥିଲେ । ଗାଲିଲିଓ ଇଟାଲିରେ ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଇତ୍ୟାଦିର ଗତିବିଧି ଗବେଷଣା କରୁଥିବା ସମୟରେ ହାର୍ଭେ ମନୁଷ୍ୟର ଶରୀର ଅଭ୍ୟନ୍ତରରେ ଚାଲିଥିବା କ୍ରିୟାମାନ ବିଶ୍ଳେଷଣ କରିଥିଲେ । ସେ ପ୍ରମାଣ କରିଥିଲେ ଯେ ହୃଦଯନ୍ତ୍ରରୁ ଧମନୀଦ୍ୱାରା ନିର୍ମଳରକ୍ତ ଶରୀରର ବିଭିନ୍ନ ଅଂଶକୁ ଯାଏ ଓ ପରିଷ୍କାର ରକ୍ତ ଶିରାଦ୍ୱାରା ଫୁସ୍‌ଫୁସ୍‌କୁ ଆସେ । ସେଠି ଅପରିଷ୍କାର ରକ୍ତ ଫୁସ୍‌ଫୁସ୍‌ରେ ନିଶ୍ୱାସ ଦ୍ୱାରା ଆନୀତ ଅମ୍ଳଜାନଦ୍ୱାରା ପରିଷ୍କୃତ ହୋଇ ହୃଦଯନ୍ତ୍ରକୁ ଯାଏ । ସେ ଶରୀରର ରକ୍ତସଞ୍ଚାଳନ କ୍ରିୟା ଆବିଷ୍କାର କରି ଶରୀର-ବିଜ୍ଞାନର ଉନ୍ନତିସାଧନ କରିଥିଲେ ।

**ସାର ଆଇଜାକ୍ ନିଉଟନ୍** (୧୬୪୨ ଖ୍ରୀ. ଅ.—୧୭୨୭ ଖ୍ରୀ. ଅ. )—ଇଂଲଣ୍ଡର ଅନ୍ୟ ଏକ ପ୍ରସିଦ୍ଧ ବୈଜ୍ଞାନିକ ନିଉଟନ୍ କେମ୍ବ୍ରିଜ ବିଶ୍ୱ-ବିଦ୍ୟାଳୟରେ ଗଣିତ ଅଧ୍ୟାପକ ଥିଲେ । ସେ ଜଣେ ବିଖ୍ୟାତ ଗାଣିତିକ ଓ ବୈଜ୍ଞାନିକ ଥିଲେ । ସେ ଗାଲିଲିଓଙ୍କ ପ୍ରଦର୍ଶିତ ପ୍ରମାଣ ଆଲୋଚନା କରି ପରିଶେଷରେ ମାଧ୍ୟାକର୍ଷଣ ଶକ୍ତି ନାମକ ଏକ ନୂତନ ବୈଜ୍ଞାନିକ ତଥ୍ୟ ଆବିଷ୍କାର



[ ନିଉଟନ ]

କରଥିଲେ । ସେ ପ୍ରକାଶ କରଥିଲେ ଯେ ପୃଥିବୀର ସ୍ରେଷ୍ଠ ବଡ଼ ପ୍ରତ୍ୟେକ ପଦାର୍ଥର ଆକର୍ଷଣ ଶକ୍ତି ଅଛି । ସୂର୍ଯ୍ୟର ଆକର୍ଷଣ ଶକ୍ତି ଅପେକ୍ଷାକୃତ ଅଧିକ ହୋଇଥିବାରୁ କ୍ଷୁଦ୍ର ଗ୍ରହମାନ ଆକର୍ଷିତ ହୋଇ ତାହାର ଚାରିପାଖରେ ଘୂରୁଛନ୍ତି । ସେହିପରି ପୃଥିବୀ ଚାରିପଟେ ଚନ୍ଦ୍ର ଘୂରୁଅଛି । ଗଛରୁ ଫଳ ସେହି କାରଣରୁ ତଳକୁ ପଡ଼ୁଅଛି । ବିଂଶ ଶତାବ୍ଦୀରେ ଜର୍ମାନୀର ଇହୁଦୀ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ନିଉଟନ୍‌ଙ୍କ ଦ୍ୱାରା ଆବିଷ୍କୃତ ମାଧ୍ୟାକର୍ଷଣ ତତ୍ତ୍ୱରେ କେତେକ ନୂତନ ତତ୍ତ୍ୱ ଯୋଗ କରଥିଲେ ।

---

## ସପ୍ତଦଶ ଅଧ୍ୟାୟ

### ଏସିଆ, ଆମେରିକା ଓ ଅଷ୍ଟ୍ରେଲିଆରେ ୟୁରୋପୀୟମାନଙ୍କର ସାମ୍ରାଜ୍ୟ ବିସ୍ତାର

ପୃଥିବୀର ବିଭିନ୍ନ ମହାଦେଶମାନଙ୍କୁ ଜଳପଥ ଆବିଷ୍କୃତ ହେବା ପରେ ନୂତନ ଦେଶମାନଙ୍କ ସହିତ ବାଣିଜ୍ୟ ବ୍ୟବସାୟ କରିବାରେ ସ୍ପେନ୍ ଓ ପର୍ତ୍ତୁଗାଲ୍‌ର ଲୋକେ ଅଗ୍ରଣୀ ଥିଲେ । ସେମାନଙ୍କ ଅନୁକରଣରେ ଇଂରେଜ, ଫରାସୀ ପ୍ରଭୃତି ୟୁରୋପୀୟ ଜାତିମାନେ ମଧ୍ୟ ଜଳପଥରେ ବାଣିଜ୍ୟ କାରବାର ଆରମ୍ଭ କରିଦେଲେ ଏବଂ କ୍ରମେ ୟୁରୋପୀୟମାନଙ୍କର ସାମ୍ରାଜ୍ୟ ପ୍ରତିଷ୍ଠିତ ହେବାକୁ ଲାଗିଲା ।

ଏସିଆ—ପର୍ତ୍ତୁଗାଲ୍‌ର ସାହସିକ ନାବିକ ଭାସ୍କୋଡ଼ଗାମା ୧୪୯୭ ଖ୍ରୀଷ୍ଟାବ୍ଦରେ ଆଫ୍ରିକାର ଉତ୍ତମାଶା ଅନ୍ତରୀପ ପ୍ରଦକ୍ଷିଣ

କରି ୧୪୯୮ ଖ୍ରୀଷ୍ଟାବ୍ଦରେ ଭାରତର ମାଲବାର ଉପକୂଳସ୍ଥ କାଲିକଟ୍ ବନ୍ଦରଠାରେ ପହଞ୍ଚିଲେ । ଭାରତକୁ ଏହି ଜଳପଥ ଆବିଷ୍କୃତ ହେବାଦ୍ୱାରା ପର୍ତ୍ତୁଗୀଜମାନେ ଭାରତରେ ପ୍ରାୟ ଏକଶହ ବର୍ଷକାଳ ଏକଚାଟିଆ ବାଣିଜ୍ୟ କରିଥିଲେ । ସେମାନେ ଭାରତର ପଶ୍ଚିମ ଉପକୂଳରେ ଗୋଆ, ଦାମନ, ଡ଼ିଉ ଏବଂ ପୂର୍ବୋପକୂଳରେ ବାଲେଶ୍ୱର, ପିପିଲି ଓ ହୁଗୁଳି ପ୍ରଭୃତି ସ୍ଥାନରେ ବାଣିଜ୍ୟକେନ୍ଦ୍ରମାନ ସ୍ଥାପନ କରିଥିଲେ । ସେମାନଙ୍କ ବାଣିଜ୍ୟ କାରବାର ପୂର୍ବଭାରତୀୟ ଦ୍ୱୀପପୁଞ୍ଜ ପର୍ଯ୍ୟନ୍ତ ପ୍ରସାର ଲାଭ କରିଥିଲା ।

ଭାରତରେ ମୋଗଲ ସମ୍ରାଟଙ୍କ ସହିତ ଯୁଦ୍ଧ ହେବା ଫଳରେ ଓ ଅନ୍ୟାନ୍ୟ ୟୁରୋପୀୟ ଜାତିମାନେ ଭାରତରେ ପ୍ରବେଶ କରିବାରୁ ପର୍ତ୍ତୁଗୀଜମାନଙ୍କର କ୍ଷମତା କ୍ରମେ ଲୋପ ପାଇବାକୁ ଲାଗିଲା । ଶେଷରେ ଗୋଆ, ଦାମନ୍, ଡ଼ିଉ ନାମକ ତିନୋଟି କ୍ଷୁଦ୍ର ସ୍ଥାନ ପର୍ତ୍ତୁଗୀଜମାନଙ୍କଦ୍ୱାରା ଶାସିତ ହେଉଥିଲା । ବର୍ତ୍ତମାନ ତାହା ଭାରତ ଇଉନିୟନ ସହ ଅନ୍ତର୍ଭୁକ୍ତ ହୋଇ କେନ୍ଦ୍ରଶାସନାଧୀନ ହୋଇଅଛି ।

ପର୍ତ୍ତୁଗୀଜମାନଙ୍କ ପରେ ଡ଼ଚ୍, ଦିନାମାର, ଇଂରେଜ ଓ ଫରାସୀ ପ୍ରଭୃତି ଜାତିମାନେ ଭାରତରେ ବାଣିଜ୍ୟ କାରବାର କରିବାକୁ ଲାଗିଲେ । କ୍ରମେ ଡଚ୍‌ମାନେ ଜାଭା, ସୁମାତ୍ରା ଇତ୍ୟାଦି ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ବାଣିଜ୍ୟ ଆରମ୍ଭ କରି ସେହି ସ୍ଥାନମାନଙ୍କରେ ରାଜ୍ୟବିସ୍ତାର କଲେ । ଭାରତରେ ଇଂରେଜ ଓ ଫରାସୀମାନେ ଶକ୍ତିଶାଳୀ ହୋଇ ରାଜ୍ୟବିସ୍ତାର କରିବାକୁ ଚେଷ୍ଟା କଲେ ।

୧୬୦୦ ଖ୍ରୀଷ୍ଟାବ୍ଦରେ ବଣିକ ଇଂରେଜ **ଇଷ୍ଟଇଣ୍ଡିଆ କମ୍ପାନୀ** ଗଠନକରି ଇଂଲଣ୍ଡର ରାଣୀ ଏଲିଜାବେଥ୍‌ଙ୍କ ଅନୁମତିକ୍ରମେ ଭାରତକୁ ବାଣିଜ୍ୟ କରିବାକୁ ଆସିଲେ । ସେମାନେ ପ୍ରଥମେ ମାନ୍ଦ୍ରାଜ, ବମ୍ବେ ଓ କଲିକତାରେ ବାଣିଜ୍ୟକେନ୍ଦ୍ର ସ୍ଥାପନ କରିଥିଲେ । ୧୬୬୪ ଖ୍ରୀଷ୍ଟାବ୍ଦରେ ଫରାସୀମାନେ ଭାରତରେ ବାଣିଜ୍ୟ କରିବାକୁ ଆସିଲେ । ସେମାନେ ପଣ୍ଡିଚେରୀ, ମାହେ, ଚନ୍ଦନନଗର ପ୍ରଭୃତି ସ୍ଥାନରେ ବାଣିଜ୍ୟ କୋଠିମାନ ସ୍ଥାପନ କଲେ ।

ଅଷ୍ଟାଦଶ ଶତାବ୍ଦୀରେ ଭାରତରେ ମୋଗଲ ଶକ୍ତିର ଅବସାନ ଘଟୁଥିବାର ସୁଯୋଗ ପାଇ ଇଂରେଜ ଓ ଫରାସୀମାନେ ଭାରତରେ ରାଜ୍ୟବିସ୍ତାର କରିବାକୁ ଚେଷ୍ଟା କରିଥିଲେ । ବିଚକ୍ଷଣ ଫରାସୀ ନେତା **ଡୁ୍ୟପ୍ଲେ** ୧୭୩୧ ଖ୍ରୀଷ୍ଟାବ୍ଦରେ ଚନ୍ଦନ-ନଗରର ଶାସନକର୍ତ୍ତାରୂପେ ନିଯୁକ୍ତ ହୋଇଥିଲେ । ସେ ଭାରତରୁ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଇଂରେଜମାନଙ୍କୁ ବିତାଡ଼ିତ କରିବାପାଇଁ ଚେଷ୍ଟା କଲେ । ପ୍ରଥମ କର୍ଣ୍ଣାଟଯୁଦ୍ଧରେ ଫରାସୀମାନେ ଜୟଯୁକ୍ତ ହୋଇଥିଲେ । ମାତ୍ର ଦ୍ୱିତୀୟ କର୍ଣ୍ଣାଟ ସମରରେ ଇଂରେଜମାନେ **କ୍ଲାଇବ**ଙ୍କ ନେତୃତ୍ୱରେ ଜୟଯୁକ୍ତ ହୋଇଥିଲେ । ୧୭୬୦ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ **ତୃତୀୟ କର୍ଣ୍ଣାଟ ସମର**ରେ ଫରାସୀମାନଙ୍କୁ **ଓାଣ୍ଡିଓ୍ୱାସ**ଠାରେ ପରାସ୍ତ କଲେ । ଏହା ଫଳରେ ଭାରତରେ ଫରାସୀମାନଙ୍କର ସାମ୍ରାଜ୍ୟ ଗଠନ କଳ୍ପନା ଚିରଦିନ ପାଇଁ ଲୋପ ପାଇଲା । ୧୭୫୭ ଖ୍ରୀଷ୍ଟାବ୍ଦରେ କ୍ଲାଇବ ବଙ୍ଗଳାର ନବାବ ସିରାଜଉଦ୍ଦୌଲାଙ୍କୁ **ପଲାସି ଯୁଦ୍ଧରେ** ପରାସ୍ତ କରି ବଙ୍ଗଳାରେ ଇଂରେଜ ଆଧିପତ୍ୟ ସ୍ଥାପନ କଲେ । ୧୭୬୫ ଖ୍ରୀଷ୍ଟାବ୍ଦରେ କ୍ଲାଇବ୍ ମୋଗଲ ସମ୍ରାଟ୍ ଶାହ ଆଲମ୍‌ଙ୍କଠାରୁ

ବଙ୍ଗ, ବିହାର ଓ ଓଡ଼ିଶାର ଦେଓ୍ୱାନୀ ଅଧିକାର ପାଇଲେ । କ୍ରମେ ଇଂରେଜମାନେ ଭାରତରେ ବିଶାଳ ଇଂରେଜ ସାମ୍ରାଜ୍ୟ ଗଠନ କରି ପାରିଥିଲେ ।

**ଆମେରିକା**—ସ୍ପେନୀୟମାନେ ଆମେରିକା ଆବିଷ୍କାର କରି ସେଠାରେ ବସତି ସ୍ଥାପନ କରିଥିଲେ । ପର୍ତ୍ତୁଗାଲ ସ୍ପେନଠାରୁ ପୃଥକ୍ ହେଲାବେଳେ ପର୍ତ୍ତୁଗୀଜମାନେ ଆମେରିକାରେ ସ୍ପେନ୍ ଅଧିକୃତ ଅଞ୍ଚଳରୁ ବ୍ରାଜିଲ ପାଇଲେ । ୧୫୧୯ ଖ୍ରୀଷ୍ଟାବ୍ଦରେ ସ୍ପେନୀୟ ନେତା କୋର୍ଟେଜଙ୍କଦ୍ୱାରା ମେକ୍ସିକୋ ଅଧିକୃତ ହେଲା ଏବଂ ୧୫୩୦ ଖ୍ରୀଷ୍ଟାବ୍ଦରେ ଅନ୍ୟ ଏକ ସ୍ପେନୀୟ ବୀର ପେରୁ ରାଜ୍ୟ ଅଧିକାର କଲେ । ଏହା ଫଳରେ ଉତ୍ତର ଓ ଦକ୍ଷିଣ ଆମେରିକାରେ ସ୍ପେନୀୟମାନେ ଉପନିବେଶ ସ୍ଥାପନ କରିବାକୁ ସକ୍ଷମ ହୋଇଥିଲେ, ମାତ୍ର ଇଂଲଣ୍ଡର ରାଣୀ ଏଲିଜାବେଥଙ୍କ ରାଜତ୍ୱ କାଳରେ ଇଂରେଜମାନେ ସ୍ପେନର ବିଶାଳ ନୌବହରକୁ ଧ୍ୱଂସ କରି ସ୍ପେନୀୟମାନଙ୍କର ନୌଶକ୍ତି ଖର୍ବ କରିଥିଲେ । ତତ୍ପରେ ପ୍ରସିଦ୍ଧ ଇଂରେଜ ନାବିକ **ଓ୍ୱାଲଟର ରାଲେ** ୧୬୦୭ ଖ୍ରୀଷ୍ଟାବ୍ଦରେ ଭର୍ଜିନିଆରେ ଇଂରେଜ ଉପନିବେଶ ସ୍ଥାପନ କରିଥିଲେ । ଇଂଲଣ୍ଡର ରାଜା ପ୍ରଥମ ଜେମସ୍‌ଙ୍କ ରାଜତ୍ୱକାଳରେ (୧୬୦୩ ଖ୍ରୀ.ଅ.—୧୬୨୫ ଖ୍ରୀ.ଅ ) ପ୍ୟୁରିଟାନ ଧର୍ମ ସମ୍ପ୍ରଦାୟର ଦଳେ ଲୋକ ରାଜାଙ୍କଦ୍ୱାରା ନିର୍ଯ୍ୟାତିତ ହେବାରୁ ସ୍ୱାଧୀନ ଭାବରେ ଧର୍ମାଚରଣ କରିବାପାଇଁ ଉତ୍ତର-ଆମେରିକାରେ ଆଶ୍ରୟ ନେଲେ । ସେମାନଙ୍କ ଦ୍ୱାରା ନିଉଇଂଲଣ୍ଡ ଓ ମାସାଚୁସେଟ୍ସ୍ ନାମକ ଉପନିବେଶଦ୍ୱୟ ସ୍ଥାପିତ ହେଲା । କାଳକ୍ରମେ ଉତ୍ତର ଆମେରିକାରେ ଇଂରେଜମାନଙ୍କଦ୍ୱାରା ତେରଟି ଉପନିବେଶ ସ୍ଥାପିତ ହେଲା । ଏଗୁଡ଼ିକ ଉତ୍ତର ଆମେରିକାର ଆଟଲାଣ୍ଟିକ ମହାସାଗର

ଉପକୂଳରେ ପଶ୍ଚିମରେ ଆଲପେନ୍ ପର୍ବତମାଳା ଓ ମିସିସିପି ନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା ।

ଇଂରେଜମାନେ ଆମେରିକାରେ ଉପନିବେଶ ସ୍ଥାପନ କରୁଥିବାର ଦେଖି ଫରାସୀମାନେ ସମ୍ରାଟ ଚତୁର୍ଦ୍ଦଶ ଲୁଇଙ୍କ ରାଜତ୍ୱରେ ଉତ୍ତର ଆମେରିକାର କାନାଡ଼ା ଅଞ୍ଚଳ ଅଧିକାର କଲେ । ଏହା ପରେ ସେମାନେ ଇଂରେଜ ଉପନିବେଶଗୁଡ଼ିକର ପଶ୍ଚିମାଞ୍ଚଳରେ ବସତି ସ୍ଥାପନ କଲେ । ତଦ୍ଦ୍ୱାରା ଇଂରେଜମାନେ ପଶ୍ଚିମରେ ସେମାନଙ୍କ ରାଜ୍ୟବିସ୍ତାର କରିବାକୁ ସୁବିଧା ପାଇଲେ ନାହିଁ । ତେଣୁ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ବିବାଦ ଲାଗି ରହିଲା । ଆମେରିକାରେ ଏହିପରି ପରିସ୍ଥିତି ଥିବାବେଳେ ୟୁରୋପରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ **ସପ୍ତବର୍ଷବ୍ୟାପୀ ଯୁଦ୍ଧ** (Seven Years War) ୧୭୫୬ ଖ୍ରୀଷ୍ଟାବ୍ଦରୁ ୧୭୬୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଚାଲିଥିଲା । ଏହି ଯୁଦ୍ଧ ଆମେରିକାରେ ମଧ୍ୟ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ଚାଲିଲା । ଆମେରିକାରେ ଇଂରେଜ ସେନାପତି **ଉଲଫ୍** ଫରାସୀମାନଙ୍କ ସହିତ ଯୁଦ୍ଧ ଚଳାଇ ଜୟଯୁକ୍ତ ହେଲେ ଓ ଫରାସୀମାନଙ୍କ ସହିତ ସନ୍ଧି କରି ୧୭୬୩ ଖ୍ରୀଷ୍ଟାବ୍ଦରେ ଫରାସୀ ଅଧିକୃତ କାନାଡାକୁ ଇଂରେଜ ସାମ୍ରାଜ୍ୟଭୁକ୍ତ କଲେ ।

**ଅଷ୍ଟ୍ରେଲିଆ**—ସପ୍ତଦଶ ଶତାବ୍ଦୀରେ ଡଚ୍ ନାବିକମାନେ ଅଷ୍ଟ୍ରେଲିଆର ପଶ୍ଚିମ ଉପକୂଳରେ ପହଞ୍ଚିଥିଲେ । ମାତ୍ର ଏହାର ଅଧିକାଂଶ ଅଞ୍ଚଳ ମରୁମୟ ହୋଇଥିବାରୁ ଓ ଅଳ୍ପସଂଖ୍ୟକ ଅନୁନ୍ନତ ଆଦିମ ଅଧିବାସୀଙ୍କ ବାସସ୍ଥଳୀ ହୋଇଥିବାରୁ ଏହା ବାଣିଜ୍ୟ ଓ ଉପନିବେଶ ସ୍ଥାପନ

ନମନ୍ତେ ଅନୁପଯୁକ୍ତ ବୋଲି ବିବେଚିତ ହୋଇଥିଲା । ୧୭୬୮ ଖ୍ରୀଷ୍ଟାବ୍ଦରେ ଇଂରେଜ ନାବିକ **କ୍ୟାପଟେନ୍ କୁକ୍** ନାଉକାଯୋଗେ ପହଞ୍ଚିଲେ । ସେ ଅଷ୍ଟ୍ରେଲିଆର ଦକ୍ଷିଣପୂର୍ବ ଉପକୂଳସ୍ଥ ଭୂଭାଗରେ ଅବତରଣ କରି ତାହା ୟୁରୋପୀୟ ମାନଙ୍କର ବାସୋପଯୋଗୀବୋଲି ଜାଣିଲେ । ପ୍ରଥମେ ଇଂରେଜ ସରକାର ଏଠାକୁ ନିର୍ବାସନ ଦଣ୍ଡରେ ଦଣ୍ଡିତ ଅପରାଧୀମାନଙ୍କୁ ପଠାଉଥିଲେ । ମାତ୍ର ସେଠାରେ



(କ୍ୟାପଟେନ କୁକ୍ )

ସୁନା ଖଣିମାନ ଆବିଷ୍କୃତ ହେବାରୁ ଓ ପଶୁପାଳନପାଇଁ ଯଥେଷ୍ଟ ଚରଣଭୂମି ଥିବାରୁ ବହୁସଂଖ୍ୟକ ଇଂରେଜ ଔପନିବେଶିକ ଅଷ୍ଟ୍ରେଲିଆରେ ବସତି ସ୍ଥାପନ କଲେ । ୧୮୯୦ ଖ୍ରୀଷ୍ଟାବ୍ଦ ବେଳକୁ ଅଷ୍ଟ୍ରେଲିଆରେ ସାତଗୋଟି ଉପନିବେଶ ସ୍ଥାପିତ ହୋଇ ଯାଇଥିଲା । ଏହି ଉପନିବେଶଗୁଡ଼ିକୁ ନେଇ **କମନ ୱେଲ୍‌ଥ୍ ଅଫ୍ ଅଷ୍ଟ୍ରେଲିଆ** ଗଠିତ ହେଲା ।

କ୍ରମେ ମାଲୟ ଉପଦ୍ୱୀପ, ସିଙ୍ଗାପୁର, ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜ ପ୍ରଭୃତି ଇଂରେଜମାନଙ୍କଦ୍ୱାରା ଅଧିକୃତ ହେଲା । ଫରାସୀମାନେ ଇଣ୍ଡୋଚୀନରେ ଓ ସ୍ପେନୀୟମାନେ ଫିଲିପାଇନ ଦ୍ୱୀପପୁଞ୍ଜରେ ଉପନିବେଶ ସ୍ଥାପନ କରିଥିଲେ ।

# ଅଷ୍ଟାଦଶ ଅଧ୍ୟାୟ
## ଆମେରିକାର ସ୍ୱାଧୀନତା ସଂଗ୍ରାମ

ଆମେରିକାରେ ଇଂରେଜମାନଙ୍କର ଯେଉଁ ତେରଗୋଟି ଉପନିବେଶ ସ୍ଥାପିତ ହୋଇଥିଲା; ତାହାର ଅଧିବାସୀମାନେ ଅତ୍ୟନ୍ତ ସ୍ୱାଧୀନତାପ୍ରିୟ ଥିଲେ । ସେମାନେ ସର୍ବଦା ଫରାସୀ ଆକ୍ରମଣର ଆଶଙ୍କା କରୁଥିବାରୁ ନିଜର ନିରାପତ୍ତାପାଇଁ ଇଂରେଜ ସରକାରଙ୍କ ଉପରେ ନିର୍ଭର କରୁଥିଲେ । ଇଂଲଣ୍ଡୀୟମାନେ ଔପନିବେଶିକମାନଙ୍କ ଉପରେ ସର୍ବଦା କର୍ତ୍ତୃତ୍ୱ ବଜାୟ ରଖିବାକୁ ଚେଷ୍ଟା କରୁଥିଲେ ।

ଇଂରେଜ ସରକାର ଔପନିବେଶିକମାନଙ୍କର ବାଣିଜ୍ୟ ବ୍ୟବସାୟ ନିୟନ୍ତ୍ରଣ କରିବାପାଇଁ ଆଇନ କରିଥିଲେ ଯେ ଉପନିବେଶଗୁଡ଼ିକର କୌଣସି ପଦାର୍ଥ ଇଂଲଣ୍ଡର ଜାହାଜ ବ୍ୟତୀତ ଅନ୍ୟ ଜାହାଜରେ ବିଦେଶକୁ ରପ୍ତାନି ହୋଇ ପାରିବ ନାହିଁ ଓ କେତେକ ଦରକାରୀ ଜିନିଷ ଇଂଲଣ୍ଡ ଛଡ଼ା ଅନ୍ୟ ଦେଶକୁ ରପ୍ତାନି ହୋଇ ପାରିବ ନାହିଁ । ଲୁଗା ଓ ଅନ୍ୟ କେତେକ ଅତ୍ୟାବଶ୍ୟକ ଜିନିଷ କେବଳ ଇଂଲଣ୍ଡରୁ କିଣାଯିବ । ଇଂରେଜ ସରକାରଙ୍କର ଏହିସବୁ ମନୋମୁଖୀ ଆଇନ୍‌କୁ ଔପନିବେଶିକମାନେ ଆଦୌ ସହ୍ୟ କରି ପାରୁ ନ ଥିଲେ ।

ସପ୍ତବର୍ଷବ୍ୟାପୀ ଯୁଦ୍ଧରେ ଫରାସୀମାନେ ଇଂରେଜଙ୍କଦ୍ୱାରା ପରାସ୍ତ ହେବାରୁ ଆମେରିକାରେ ଫରାସୀ ଶକ୍ତିର ଅବସାନ ଘଟିଲା । ସେତେବେଳେ ଇଂଲଣ୍ଡର ରାଜା ଥିଲେ ତୃତୀୟ ଜର୍ଜ । ସପ୍ତବର୍ଷବ୍ୟାପୀ ଯୁଦ୍ଧରେ ବ୍ୟୟିତ ହୋଇଥିବା ଅର୍ଥର କିୟଦଂଶ ଔପନିବେଶିକମାନଙ୍କଠାରୁ ଆଦାୟ କରିବାକୁ ଇଂରେଜ ସରକାର

ଇଚ୍ଛାକଲେ । ସେଥିପାଇଁ ଇଂଲଣ୍ଡ ପାର୍ଲିଆମେଣ୍ଟରେ **ଷ୍ଟାମ୍ପଆକ୍ଟ** (STAMP ACT ) ନାମକ ଆଇନ୍ ପାସ ହେଲା । ଏହି ଆଇନ ଅନୁସାରେ ଆମେରିକାରେ ଆଇନ୍ ଅଦାଲତ-ସମ୍ପର୍କୀୟ କାଗଜ-ପତ୍ରରେ ଷ୍ଟାମ୍ପ ଖରିଦ କରି ଲଗାଇବାକୁ ସମସ୍ତେ ବାଧ୍ୟ ହେଲେ । ଔପନିବେଶିକମାନେ ଏହି ଆଇନ ଅମାନ୍ୟ କରି ଯୁକ୍ତି କଲେ ଯେ ଇଂଲଣ୍ଡ ପାର୍ଲିଆମେଣ୍ଟରେ ସେମାନଙ୍କର କୌଣସି ପ୍ରତିନିଧି ନାହାନ୍ତି । ତେଣୁ ଏହି ପାର୍ଲିଆମେଣ୍ଟର କର ବସାଇବାର କ୍ଷମତା ନାହିଁ । ଇଂଲଣ୍ଡ ସରକାର ବର୍ଷକ ପରେ ଷ୍ଟାମ୍ପ ଆକ୍ଟ ଉଠାଇ ନେଲେ ।

ଏହାପରେ ଇଂଲଣ୍ଡ ପାର୍ଲିଆମେଣ୍ଟ **ଡିକ୍ଲାରେଟରୀ ଆକ୍ଟ** (Declaratory Act) ନାମକ ଅନ୍ୟ ଏକ ଆଇନ୍ ଧାର୍ଯ୍ୟ କଲେ । ଏଥିରେ ଘୋଷଣା କରାଗଲା ଯେ ଉପନିବେଶଗୁଡ଼ିକ ଉପରେ କରଧାର୍ଯ୍ୟ କରିବାର କ୍ଷମତା ଇଂଲଣ୍ଡ ପାର୍ଲିଆମେଣ୍ଟର ଅଛି । ସେହି ଆଇନ ଅନୁସାରେ ଇଂଲଣ୍ଡ ଚା, କାଚ, କାଗଜ ରଙ୍ଗ ପ୍ରଭୃତି କେତେକ ଜିନିଷ ଉପରେ କର ବସାଇଲେ । ଏଥିରେ ଔପନିବେଶିକମାନେ ଅତ୍ୟଧିକ କ୍ରୋଧାନ୍ୱିତ ହେଲେ । ଏହିପରି ସମୟରେ ଗୋଟିଏ ଚା ବୋଝାଇ ହୋଇଥିବା ଜାହାଜ **ବୋଷ୍ଟନ** ବନ୍ଦରରେ ଲାଗିଲା । ଔପନିବେଶିକମାନେ ରେଡ୍ଇଣ୍ଡିଆନ୍ ବେଶରେ ଜାହାଜରେ ପଶି ସମସ୍ତ ଚା ସମୁଦ୍ରକୁ ଫିଙ୍ଗି ଦେଲେ । ୧୭୭୪ ଖ୍ରୀଷ୍ଟାବ୍ଦରେ, ଉପନିବେଶଗୁଡିକର ପ୍ରତିନିଧିମାନେ **ଫିଲାଡେଲ୍‌ଫିଆ**ଠାରେ ମିଳିତ ହୋଇ ସ୍ଥିରକଲେ ଯେ ସେମାନେ ଇଂରେଜ ସରକାରଙ୍କ ସହିତ ବାଣିଜ୍ୟ ସମ୍ପର୍କ ସମ୍ପୂର୍ଣ୍ଣରୂପେ ତୁଟାଇ ଦେବେ । ତହିଁ ପରବର୍ଷ ଔପନିବେଶିକମାନେ ଇଂରେଜ ସରକାରଙ୍କ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭକଲେ

ଓ ୧୭୭୬ ଖ୍ରୀଷ୍ଟାବ୍ଦରେ ସ୍ୱାଧୀନତା ଘୋଷଣା କଲେ । ଏହା American Declaration of Independence ନାମରେ ପ୍ରସିଦ୍ଧ । ଏହି ଘୋଷଣା ସଙ୍ଗେ ସଙ୍ଗେ ଆମେରିକା ଯୁକ୍ତରାଷ୍ଟ୍ର ଗଠିତ ହେଲା । ଜର୍ଜ ଓ୍ୟାସିଙ୍ଗ୍‌ଟନ୍ ନାମକ ସୁଦକ୍ଷ ସେନାପତି ଔପନିବେଶିକମାନଙ୍କୁ ସଙ୍ଗଠିତ କରି ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇଲେ । ଫରାସୀମାନେ ଇଂରେଜମାନଙ୍କ ସହ ଥିବା ପୂର୍ବ ଶତ୍ରୁତାପାଇଁ ଔପନିବେଶିକମାନଙ୍କୁ ବହୁତ ଅର୍ଥ ସାହାଯ୍ୟ ଦେଇଥିଲେ ଓ ଫରାସୀ ସ୍ୱେଚ୍ଛାସେବକମାନେ ଔପନିବେଶିକଙ୍କ ତରଫରୁ ଇଂରେଜମାନଙ୍କ ସହିତ ଯୁଦ୍ଧ କଲେ । କ୍ରମେ ସ୍ପେନ, ରୁଷିଆ, ଡେନ୍‌ମାର୍କ ପ୍ରଭୃତି ଦେଶ ଔପନିବେଶିକମାନଙ୍କୁ ସାହାଯ୍ୟ କଲେ । ଇଂରେଜ ସୈନ୍ୟମାନେ ଶେଷରେ ଜଳ, ସ୍ଥଳ ଉଭୟ ଯୁଦ୍ଧରେ ପରାସ୍ତ ହୋଇ ୧୭୮୩ ଖ୍ରୀଷ୍ଟାବ୍ଦରେ ପ୍ୟାରିସଠାରେ ସନ୍ଧି କରି ଯୁକ୍ତରାଷ୍ଟ୍ରର ସ୍ୱାଧୀନତା ସ୍ୱୀକାର କଲେ । ସେହି ଦିନରୁ ଆମେରିକାର ଯୁକ୍ତରାଷ୍ଟ୍ର (Untied States of America) ସ୍ୱାଧୀନ ଭାବରେ ରହି ପୃଥିବୀର ଏକ ଶକ୍ତିଶାଳୀ ଦେଶରେ ପରିଣତ ହେଲା । ତାହାପରେ ଯୁକ୍ତରାଷ୍ଟ୍ରର ସମ୍ବିଧାନ ପ୍ରସ୍ତୁତ ହୋଇ ପ୍ରତି ଚାରି ବର୍ଷରେ ଥରେ ସମଗ୍ର ଯୁକ୍ତରାଷ୍ଟ୍ରପାଇଁ ଜଣେ ସଭାପତି ନିର୍ବାଚିତ ହେଲେ । ଜର୍ଜଓ୍ୱାସିଙ୍ଗଟନ୍



[ଜର୍ଜ ଓ୍ୱାସିଙ୍ଗଟନ୍]

୧୭୮୯ ଖ୍ରୀଷ୍ଟାବ୍ଦରେ ଯୁକ୍ତରାଷ୍ଟ୍ରର ପ୍ରଥମ ରାଷ୍ଟ୍ରପତିରୂପେ ନିର୍ବାଚିତ ହେଲେ । ସେ ଆମେରିକାରେ ସ୍ୱାଧୀନତା ସଂଗ୍ରାମର ଶ୍ରେଷ୍ଠ ନେତା ଥିଲେ । ଅପୂର୍ବ ତ୍ୟାଗ, ଦେଶଭକ୍ତି ଓ ସଂଗଠନ ଶକ୍ତି ଯୋଗୁଁ ସେ ଯୁକ୍ତରାଷ୍ଟ୍ରର **ଜାତୀୟ ପିତା**ରୂପେ ସମ୍ମାନିତ ହେଉ ଅଛନ୍ତି । ୧୭୯୯ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ହୋଇଥିଲା ।

**ଆବ୍ରାହମ୍ ଲିଙ୍କନ୍**—ଆବ୍ରାହମ୍ ଲିଙ୍କନ ୧୮୦୯ ଖ୍ରୀଷ୍ଟାବ୍ଦରେ ଆମେରିକା ଯୁକ୍ତରାଷ୍ଟ୍ର ଅନ୍ତର୍ଗତ କେଣ୍ଟୁକି ରାଜ୍ୟରେ ଏକ ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଲିଙ୍କନ୍ ପିଲାବେଳେ ନିଜ ଚେଷ୍ଟାରେ ଅଳ୍ପକିଛି ଲେଖାପଢ଼ା ଶିଖିଥିଲେ । ବୟଃପ୍ରାପ୍ତ ହେବାରୁ ସେ ଗୋଟିଏ ଦୋକାନରେ ମେନେଜରରୂପେ ଅଳ୍ପ ଦିନ କାର୍ଯ୍ୟ କରିଥିଲେ । ୨୭ ବର୍ଷ ବୟସରେ ସେ ନିଉଅର୍ଲିନସ ରାଜ୍ୟର ବ୍ୟବସ୍ଥା ସଭାର ସଭ୍ୟରୂପେ ନିର୍ବାଚିତ ହୋଇଥିଲେ । ଏହାର ଦଶବର୍ଷ ପରେ ସେ ଆମେରିକା ଯୁକ୍ତରାଷ୍ଟ୍ର କଂଗ୍ରେସର ଏକ ଲୋକପ୍ରତିନିଧି ସଭ୍ୟରୂପେ ନିର୍ବାଚିତ ହୋଇଥିଲେ । ୧୮୬୦ ଖ୍ରୀଷ୍ଟାବ୍ଦରେ ସେ ରିପବ୍ଲିକାନ ଦଳ ପକ୍ଷରୁ ପ୍ରାର୍ଥୀହୋଇ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି ରୂପେ ନିର୍ବାଚିତ ହୋଇଥିଲେ ।



(ଆବ୍ରାହମ୍ ଲିଙ୍କନ)

ଏହାର କେତେଦିନ ପରେ ଯୁକ୍ତରାଷ୍ଟ୍ରରେ ଉତ୍ତର ଓ ଦକ୍ଷିଣ ଅଂଶର ରାଜ୍ୟମାନଙ୍କ ମଧ୍ୟରେ ଗୃହଯୁଦ୍ଧ ଆରମ୍ଭ ହେଲା ।

ଯୁକ୍ତରାଷ୍ଟ୍ର ଆମେରିକାରେ ସେତେବେଳେ ଦାସତ୍ୱ ପ୍ରଥା ପ୍ରଚଳିତ ଥିଲା । ସ୍ପେନ୍, ପର୍ତ୍ତୁଗାଲ୍ ଓ ଇଂଲଣ୍ଡର ବଣିକମାନେ ଆଫ୍ରିକାର ନିଗ୍ରୋମାନଙ୍କୁ ବଳପୂର୍ବକ ଧରିନେଇ ଉପନିବେଶ-ଗୁଡ଼ିକରେ ଦାସରୂପେ ବିକ୍ରି କରୁଥିଲେ । ଯୁକ୍ତରାଷ୍ଟ୍ରର ଉତ୍ତର ଦକ୍ଷିଣ-ପୂର୍ବାଂଶର ବଣ ଜଙ୍ଗଲ ସଫାକରି କୃଷିକ୍ଷେତ୍ର ନିର୍ମାଣ କରିବାକୁ ଓ ବିରାଟ କୃଷିକ୍ଷେତ୍ରମାନଙ୍କରେ କୃଷି କରିବାକୁ ବହୁ ଲୋକ ଆବଶ୍ୟକ ହେଉଥିଲେ । ୟୁରୋପୀୟ ଜମି ମାଲିକମାନେ ନିଗ୍ରୋମାନଙ୍କୁ କିଣି ନେଇ କୃଷି କାର୍ଯ୍ୟରେ ଲଗାଉଥିଲେ ।

ଊନବିଂଶ ଶତାବ୍ଦୀ ଆରମ୍ଭରୁ ଦାସତ୍ୱ ପ୍ରଥା ବିରୁଦ୍ଧରେ ୟୁରୋପରେ ଆନ୍ଦୋଳନ ଚାଲିଥିଲା । ଆବ୍ରାହମ୍ ଲିଙ୍କନ୍ ପିଲାବେଳୁ ଦାସମାନଙ୍କର ଦୁର୍ଦ୍ଦଶା ଓ ଦାରୁଣ ନିର୍ଯ୍ୟାତନା ଦେଖି ଅତ୍ୟନ୍ତ ଦୁଃଖିତ ହୋଇଥିଲେ ଏବଂ ସୁବିଧା ପାଇଲେ ଦାସତ୍ୱପ୍ରଥା ଲୋପ କରିବାକୁ ଇଚ୍ଛା କରୁଥିଲେ । ଦକ୍ଷିଣାଂଶର ରାଜ୍ୟଗୁଡ଼ିକ କୃଷିପ୍ରଧାନ ଅଞ୍ଚଳ ହୋଇଥିବାରୁ ଦାସମାନଙ୍କୁ ମୁକ୍ତ ଦେଲେ କୃଷି କାର୍ଯ୍ୟରେ ବ୍ୟାଘାତ ଘଟିବ ବୋଲି ଜମି ମାଲିକମାନେ ଦାସତ୍ୱ ପ୍ରଥା ଲୋପ କରିବାକୁ ରାଜି ନ ଥିଲେ । ଲିଙ୍କନ୍ ଯୁକ୍ତରାଷ୍ଟ୍ରର ସଭାପତି ହେବା ମାତ୍ରେ ଦକ୍ଷିଣ ରାଜ୍ୟଗୁଡ଼ିକ ଆତଙ୍କିତ ହେଲେ । ସେମାନେ ଯୁକ୍ତରାଷ୍ଟ୍ରରୁ ଅଲଗା ହୋଇ ଏକ ସ୍ୱତନ୍ତ୍ର ରାଷ୍ଟ୍ରସଂଘ ଗଠନ କରିବା ପାଇଁ ଆୟୋଜନ କଲେ । ଫଳରେ ଉତ୍ତର ଓ ଦକ୍ଷିଣାଞ୍ଚଳ ମଧ୍ୟରେ ଚାରିବର୍ଷକାଳ ଗୃହଯୁଦ୍ଧ ଚାଲିଲା । ଲିଙ୍କନ୍ ଧୈର୍ଯ୍ୟ ଓ ଦୃଢ଼ତାର ସହିତ ପରିସ୍ଥିତିର ସମ୍ମୁଖୀନ ହେଲେ । ୧୮୬୫ ଖ୍ରୀଷ୍ଟାବ୍ଦରେ ଦକ୍ଷିଣାଞ୍ଚଳର ସୈନ୍ୟ-ମାନେ ପରାସ୍ତ ହୋଇ ଆତ୍ମସମର୍ପଣ କଲେ । ସେହିଦିନଠାରୁ ଯୁକ୍ତରାଷ୍ଟ୍ରର ଦାସତ୍ୱ ପ୍ରଥା ଚିରଦିନ ପାଇଁ ଲୋପ ପାଇଲା ।

ଆବ୍ରାହମ୍ ନିଗ୍ରୋ ଦାସମାନଙ୍କୁ ମୁକ୍ତିଦାନ କରି ତାଙ୍କ ଜୀବନର ଲକ୍ଷ୍ୟ ପୂରଣ କଲେ । ମାତ୍ର ଅଳ୍ପଦିନ ପରେ ସେ ଗୋଟିଏ ନାଟ୍ୟାଳୟରେ ବସି ନାଟକ ଅଭିନୟ ଦେଖୁଥିଲାବେଳେ ଦକ୍ଷିଣାଞ୍ଚଳର ଜଣେ ଆତତାୟୀଙ୍କଦ୍ୱାରା ନିହତ ହୋଇଥିଲେ । ଆବ୍ରାହମଙ୍କ ଜୀବନର ଆଦର୍ଶ ନିମ୍ନଲିଖିତ ଉକ୍ତିରୁ ସ୍ପଷ୍ଟ ଜଣାପଡ଼େ ।
''As I shall not be a slave, So I shall not be a master.

---

## ଊନବିଂଶ ଅଧ୍ୟାୟ

## ଫରାସୀ ରାଷ୍ଟ୍ରବିପ୍ଳବ ଓ ନେପୋଲିୟନ

ଆମେରିକାର ସ୍ୱାଧୀନତା ସଂଗ୍ରାମ ଠାରେ ପରେ ଘଟିଥିବା ଫରାସୀ ରାଷ୍ଟ୍ର ବିପ୍ଳବ ପୃଥିବୀ ଇତିହାସରେ ଏକ ପ୍ରଧାନ ଘଟଣା । ଏହି ବିପ୍ଳବ ୧୭୮୯ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ଦେଶରେ ଆରମ୍ଭ ହୋଇଥିଲା ।

**ବିପ୍ଳବର କାରଣ**—ଫରାସୀ ରାଷ୍ଟ୍ରବିପ୍ଳବ ସଂଘଟିତ ହେବାର ଅନେକଗୁଡ଼ିଏ କାରଣ ଅଛି । ସେଥିମଧ୍ୟରୁ ରାଜନୈତିକ, ସାମାଜିକ ଓ ଆର୍ଥିକ କାରଣଗୁଡ଼ିକ ପ୍ରଧାନ ।

**ରାଜନୈତିକ କାରଣ**—ଫ୍ରାନ୍ସ ଦେଶର ରାଜାମାନେ ଅତ୍ୟନ୍ତ ସ୍ୱେଚ୍ଛାଚାରୀ ଥିଲେ । ସେମାନେ ଜନସାଧାରଣଙ୍କ ଉପକାର ପାଇଁ କୌଣସି ବ୍ୟବସ୍ଥା ନ କରି ନିଜେ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଭୋଗ-ବିଳାସରେ ସମୟ କଟାଉଥିଲେ । ସ୍ୱେଚ୍ଛାଚାରୀ ଫରାସୀ-ସମ୍ରାଟ ଚତୁର୍ଦ୍ଦଶ ଲୁଇ ଗର୍ବର ସହିତ ଘୋଷଣା କରିଥିଲେ, ରାଜ୍ୟ

କହିଲେ ମୁଁ ନିଜେ (I am the State)। ସେ ପ୍ରଜାମାନଙ୍କ ପାଖରୁ ଦୂରରେ ରହିବାପାଇଁ ତାଙ୍କ ରାଜଧାନୀ ପ୍ୟାରିସଠାରୁ କିଛି ଦୂରରେ **ଭର୍ସେଲସ୍** ନାମକ ଏକ ନୂତନ ନଗର ନିର୍ମାଣ କରିଥିଲେ । ନୂତନ ରାଜଧାନୀରେ ସୁରମ୍ୟ ପ୍ରାସାଦ, ପ୍ରମୋଦ ଉଦ୍ୟାନ, ସୁସଜ୍ଜିତ ରଙ୍ଗମଞ୍ଚ ଓ ବିଳାସପୂର୍ଣ୍ଣ ସ୍ନାନାଗାର ଇତ୍ୟାଦି ନିର୍ମାଣ କରି ବହୁ ଅର୍ଥ ବ୍ୟୟ କରିଥିଲେ । ଫ୍ରାନ୍ସର ଜନସାଧାରଣ କରଭାରରେ ପ୍ରପୀଡ଼ିତ ହୋଇ ଦୁଃଖ ଦାରିଦ୍ର୍ୟରେ ସଢ଼ୁଥିଲେ । ଏହିପରି ଅବସ୍ଥାରେ ଭର୍ସେଲସ୍ ସହର ନିର୍ମାଣ ପାଇଁ ସେ ପ୍ରଜାମାନଙ୍କଠାରୁ ନାନାପ୍ରକାର କର ଆଦାୟ କଲେ । ଚତୁର୍ଦ୍ଦଶ ଲୁଇଙ୍କ ପରେ ପଞ୍ଚଦଶ ଲୁଇ ଫ୍ରାନ୍ସର ରାଜା ହୋଇ ଦୀର୍ଘକାଳ ରାଜତ୍ୱ କରିଥିଲେ । ସେ ମଧ୍ୟ ଭର୍ସେଲସରେ ଭୋଗ ବିଳାସରେ ବୁଡ଼ି ରହି ପ୍ରଜାମାନଙ୍କର ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେଇ ନଥିଲେ । ୧୭୭୪ଖ୍ରୀଷ୍ଟାବ୍ଦରେ ଷୋଡ଼ଶ ଲୁଇ ଫ୍ରାନ୍ସର ରାଜା ହେଲେ । ସେ ଶାନ୍ତ ଏବଂ ସରଳ ପ୍ରକୃତିର ଲୋକ ଥିଲେ; କିନ୍ତୁ ସେତେବେଳକୁ ଫ୍ରାନ୍ସର ସାମାଜିକ ଅବସ୍ଥା ଏପରି ଶୋଚନୀୟ ହୋଇ ଯାଇଥିଲା ଯେ ବିପ୍ଳବ ଆରମ୍ଭ ହେବା ଅବଶ୍ୟମ୍ଭାବୀ ବୋଲି ଜଣା ଯାଉଥିଲା ।

**ସାମାଜିକ କାରଣ**—ଫ୍ରାନ୍ସରେ ସେତେବେଳେ ତିନୋଟି ଶ୍ରେଣୀର ଲୋକ ଥିଲେ, ଯଥା—(୧) ଧର୍ମଯାଜକ, ସାମନ୍ତ ଓ ଜମିଦାର, (୨) ସାଧାରଣ ପ୍ରଜା । ଧର୍ମଯାଜକ, ସାମନ୍ତ ଓ ଜମିଦାରମାନେ ସମାଜରେ ସମ୍ମାନିତ ବ୍ୟକ୍ତି ଥିଲେ । ସେମାନେ ସମସ୍ତ ପ୍ରକାର କରରୁ ଅବ୍ୟାହତି ପାଇ ରାଜାଙ୍କ ସାହାଯ୍ୟ-କାରୀରୂପେ ସବୁ ସୁଖ ସୁବିଧା ଭୋଗ କରୁଥିଲେ । ସାଧାରଣ ପ୍ରଜାମାନେ ତାଙ୍କ କଷ୍ଟାର୍ଜିତ ଧନର ଅଧିକାଂଶ କରରୂପେ ରାଜାଙ୍କୁ

ଦେଇ ଅତ୍ତ ଦୁଃଖରେ ସମସ୍ତ କଟାଉଥିଲେ । ସାମାନ୍ୟ ଲୁଣ ପାଇଁ ମଧ୍ଯ ସେମାନେ କର ଦେଉଥିଲେ ।

**ଆର୍ଥନୀତିକ କାରଣ**—ଅର୍ଥନୈତିକ କ୍ଷେତ୍ରରେ ଦିନକୁ ଦିନ ଫ୍ରାନ୍ସ ଦରିଦ୍ର ହୋଇ ଯାଉଥିଲା । ରାଜାମାନେ ଯୁଦ୍ଧ ଓ ଆମୋଦ ପ୍ରମୋଦରେ ବହୁ ଅର୍ଥ ବ୍ୟୟ କରି ରାଜକୋଷ ଶୂନ୍ୟ କରି ଦେଇଥିଲେ । ରାଜ୍ୟଶାସନ ପାଇଁ ଅନ୍ୟ ରାଜ୍ୟରୁ ଋଣ ଆଣିବାକୁ ପଡ଼ୁଥିଲା; ଏହି ଋଣ ପରିଶୋଧ ପାଇଁ ପ୍ରଜାମାନଙ୍କଠାରୁ ନାନା ଉପାୟରେ କର ଆଦାୟ କରାଯାଉଥିଲା ।

ଫ୍ରାନ୍ସର ଏହିପରି ଦୁରବସ୍ଥା ବେଳେ **ଭଲଟେୟାର୍, ମଣ୍ଟେସ୍କ୍ୟୁ ଓ ରୁଷୋ** ପ୍ରଭୃତି ସ୍ୱାଧୀନଚେତା ଲେଖକମାନେ ସେମାନଙ୍କ ଲେଖାଦ୍ୱାରା ଫରାସୀମାନଙ୍କ ମନରେ ବିଦ୍ରୋହଭାବ ଜାଗ୍ରତ କରାଇଥିଲେ । ରୁଷୋ ଜନସାଧାରଣଙ୍କ ମଧ୍ୟରେ ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତା ବାଣୀ ପ୍ରଚାର କରିଥିଲେ । ସେ କହୁଥିଲେ ଯେ ମନୁଷ୍ୟ ସ୍ୱାଧୀନ ଭାବରେ ଜନ୍ମ ହୁଏ, ମାତ୍ର ଶାସକଗୋଷ୍ଠୀ ତାହାକୁ ଦାସତ୍ୱର ଶୃଙ୍ଖଳ ପିନ୍ଧାନ୍ତି । ଏହି ପ୍ରସିଦ୍ଧ ଲେଖକଙ୍କ ପ୍ରେରଣାରେ ଜନସାଧାରଣ ବିଦ୍ରୋହ ପାଇଁ ପ୍ରସ୍ତୁତ ହେଲେ ।

ଏହିପରି ସମୟରେ ଫ୍ରାନ୍ସର ଜନସାଧାରଣ ଆମେରିକା ଔପନିବେଶିକମାନଙ୍କୁ ଇଂରେଜ ବିରୁଦ୍ଧରେ ସ୍ୱେଚ୍ଛାସେବକ-ଭାବରେ ସ୍ୱାଧୀନତା ସଂଗ୍ରାମରେ ସାହାଯ୍ୟ କରିଥିଲେ । ଆମେରିକାରେ ଔପନିବେଶିକ ବିଦ୍ରୋହ ସଫଳ ହେବାରୁ ଫ୍ରାନ୍ସର ସାଧାରଣ ଲୋକେ ଏଥିରେ ଉତ୍ସାହିତ ହୋଇଥିଲେ । ସେମାନେ ଆମେରିକା ପରି ଫ୍ରାନ୍ସରୁ ରାଜତନ୍ତ୍ର ଲୋପ କରିବାକୁ ସ୍ଥିର କଲେ ।

**ବିପ୍ଳବର ଗତି**—ସପ୍ତବର୍ଷବ୍ୟାପୀ ଯୁଦ୍ଧରେ ଫ୍ରାନ୍ସର ରାଜକୋଷ ଶୂନ୍ୟ ହୋଇଯାଇଥିଲା । ଏହାପରେ ରାଜା ଷୋଡ଼ଶ ଲୁଇ ଖୁବ୍ ଅର୍ଥ ସଙ୍କଟରେ ସମ୍ମୁଖୀନ ହୋଇ ଅର୍ଥ ମଞ୍ଜୁର କରିବା ପାଇଁ ଫରାସୀ ପାର୍ଲିଆମେଣ୍ଟ **ଷ୍ଟେଟସ୍ ଜେନେରାଲ୍** States General)କୁ ୧୭୮୯ ଖ୍ରୀଷ୍ଟାବ୍ଦରେ ଆହ୍ୱାନ କଲେ । ଏଥିପୂର୍ବରୁ ପ୍ରାୟ ୧୮୦ ବର୍ଷ ଭିତରେ ଫ୍ରାନ୍ସର ରାଜାମାନେ କେବେହେଲେ ପାର୍ଲିଆମେଣ୍ଟ ବା ଷ୍ଟେଟସ୍ ଜେନେରାଲ ଡକାଇ ନ ଥିଲେ । ପାର୍ଲିଆମେଣ୍ଟ ବୈଠକ ଆରମ୍ଭ ହେବା ମାତ୍ରେ ଜନସାଧାରଣଙ୍କ ପ୍ରତିନିଧିମାନେ ରାଜା, ସାମନ୍ତ ଓ ଧର୍ମଯାଜକମାନଙ୍କୁ ତୀବ୍ର ସମାଲୋଚନା କରି ସେମାନଙ୍କୁ ସବୁ ସୁବିଧାରୁ ବଞ୍ଚିତ କରିବାକୁ ଦାବୀ କଲେ । ଏଥିରେ ରାଜା ଉତ୍ତ୍ୟକ୍ତ ହୋଇ ପାର୍ଲିଆମେଣ୍ଟ ଭାଙ୍ଗି ଦେବାକୁ ବସିଲେ । ଜନସାଧାରଣଙ୍କ ପ୍ରତିନିଧିମାନେ ନିଜ ସଭାକୁ **ଜାତୀୟ ସଭା** (National Assembly) ନାମ ଦେଇ ନିଭୟରେ କାର୍ଯ୍ୟ ଚଳାଇଲେ । ଏହାପରେ ଖୁବରେ ବିପ୍ଳବ ଆରମ୍ଭ ହେଲା । ପ୍ୟାରିସର ଉତ୍ତ୍ୟକ୍ତ ଜନତା ଜୁଲାଇ ୧୪ ତାରିଖ ଦିନ ଫ୍ରାନ୍ସର ବିଖ୍ୟାତ ବନ୍ଦୀଶାଳା **ବାଷ୍ଟାଇଲ୍** ଦୁର୍ଗକୁ ଭାଙ୍ଗି ବନ୍ଦୀମାନଙ୍କୁ ଖଲାସ କରିଦେଲେ । ସମଗ୍ର ଫ୍ରାନ୍ସରେ ବିପ୍ଳବର ଅଗ୍ନି ଜଳି ଉଠିଲା । ଫ୍ରାନ୍ସର ସାମନ୍ତମାନେ ପ୍ରାଣରକ୍ଷାପାଇଁ ଭୟରେ ଅନ୍ୟ ଦେଶକୁ ପଳାଇ ଗଲେ । ୧୭୯୧ ଖ୍ରୀଷ୍ଟାବ୍ଦରେ ଷୋଡ଼ଶ ଲୁଇ ନିଜ ପରିବାର ସହ ଛଦ୍ମବେଶରେ ଫ୍ରାନ୍ସରୁ ପଳାଇ ଯାଉଥିଲାବେଳେ ବାଟରେ ଧରାହେଲେ । ଇତି ମଧ୍ୟରେ ଫ୍ରାନ୍ସର ଜାତୀୟ ସଭା ଏକ ନୂତନ ଶାସନ ଖସଡ଼ା ପ୍ରସ୍ତୁତ କରି ରାଜାଙ୍କୁ ନାମମାତ୍ର ଶାସକ ରଖି ଦେଶରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା କଲେ ।

ଅଷ୍ଟ୍ରିଆର ସମ୍ରାଟ ଓ ପ୍ରୁସିଆର ରଜା ଫ୍ରାନ୍ସ ରାଜାଙ୍କୁ ସାହାଯ୍ୟ କରିବାପାଇଁ ଫ୍ରାନ୍ସ ଆକ୍ରମଣ କଲେ । ଫ୍ରାନ୍ସରେ ଜାତୀୟ ସୈନ୍ୟବାହିନୀ ଅଷ୍ଟ୍ରିଆ ଓ ପ୍ରୁସିଆର ମିଳିତ ସେନାଙ୍କୁ ପରାସ୍ତ କରିଥିଲେ । ଏହି ଘଟଣା ପରେ; ବିପ୍ଳବୀମାନଙ୍କ ମନରେ ରାଜା ଓ ସାମନ୍ତମାନଙ୍କ ପ୍ରତି ଅବିଶ୍ୱାସ ବଢ଼ିଲା । ରାଜଧାନୀ ପ୍ୟାରିସରେ **ଆତଙ୍କବାଦ ଶାସନ** (Reign of terror) ଚାଲିଲା । ରାଜା ଓ ରାଣୀ ଦେଶଦ୍ରୋହ ଅପରାଧରେ ୧୭୯୩ ଖ୍ରୀଷ୍ଟାବ୍ଦରେ ପ୍ରାଣଦଣ୍ଡ ପାଇଲେ । ରୋବେସ୍‌ପିୟାର କ୍ଷମତାଶାଳୀ ହୋଇ **ଗୁଲୋଟିନ୍** ନାମକ ଯନ୍ତ୍ର ସାହାଯ୍ୟରେ ରାଜାଙ୍କ ସମର୍ଥନ-କାରୀମାନଙ୍କୁ ହତ୍ୟା କଲେ । ରାଜତନ୍ତ୍ର ଲୋପ ପାଇବା ପରେ ଫ୍ରାନ୍ସର ଚତୁର୍ଦ୍ଦିଗରୁ ବିପଦ ମାଡ଼ିଆସିଲା । ୧୭୯୩ ଖ୍ରୀଷ୍ଟାବ୍ଦରେ ଅଷ୍ଟ୍ରିଆ ଓ ପ୍ରୁସିଆ, ଫ୍ରାନ୍ସ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ତତ୍ପରେ ଇଂଲଣ୍ଡ ଅଷ୍ଟ୍ରିଆ ଓ ପ୍ରୁସିଆକୁ ଯୁଦ୍ଧରେ ସାହାଯ୍ୟ କଲା । ଫ୍ରାନ୍ସରେ ଅରାଜକତା ବୃଦ୍ଧି ପାଇଲା । ଚାରିଆଡେ ନରହତ୍ୟା ଓ ନୃଶଂସତା ଚାଲିଲା । ଦେଶରେ ଏହିପରି ପରିସ୍ଥିତି ବେଳେ ନେପୋଲିୟନ୍ ନାମକ ଏକ ମହାବୀର ଆବିର୍ଭୂତ ହୋଇ ଫ୍ରାନ୍ସର ଭାଗ୍ୟ ନିୟନ୍ତ୍ରଣ କଲେ ।

**ନେପୋଲିୟନ୍ ବୋନାପାର୍ଟ**—ନେପୋଲିୟନ୍ ୧୭୬୯ ଖ୍ରୀଷ୍ଟାବ୍ଦରେ କର୍ସିକା ଦ୍ୱୀପରେ ଏକ ସାଧାରଣ ଫରାସୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ବାଲ୍ୟଶିକ୍ଷା ଶେଷ କରି ପ୍ୟାରିସର ଏକ ସାମରିକ ବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ସେଠାରୁ ଉତ୍ତୀର୍ଣ୍ଣ ହୋଇ ସେ ଫ୍ରାନ୍ସର ସୈନ୍ୟବିଭାଗରେ ଜଣେ ସୈନିକ-ଭାବରେ ନିଯୁକ୍ତ ହୋଇଥିଲେ । ସେ ଜଣେ ଅସାଧାରଣ ସମର-କୌଶଳୀ ଓ ପ୍ରତିଭାବାନ୍ ବ୍ୟକ୍ତି ଥିଲେ । ସାଧାରଣତନ୍ତ୍ର ସରକାର

ତାଙ୍କୁ ସେନାପତିରୂପେ ନିଯୁକ୍ତ କରି ଅଷ୍ଟ୍ରିଆର ସୈନ୍ୟମାନଙ୍କୁ ପରାସ୍ତ କରିବା ପାଇଁ ଇଟାଲୀକୁ ପ୍ରେରଣ କରିଥିଲେ । ୨୭ ବର୍ଷ ବୟସରେ ସେ ଏହି ଦାୟିତ୍ୱ ଗ୍ରହଣ କରି ଅଷ୍ଟ୍ରିଆର ସୈନ୍ୟମାନଙ୍କୁ ଇଟାଲୀରୁ ତଡ଼ିଦେଇ ଇଟାଲୀର ଶାସକ ହେଲେ । ଏହାଦ୍ୱାରା ତାଙ୍କର ଖ୍ୟାତି ବଢ଼ିଯାଇଥିଲା । ଏହାପରେ ସେ ପୂର୍ବାଞ୍ଚଳରେ ଇଂରେଜ-ମାନଙ୍କ ଉପନିବେଶ ଓ ରାଜ୍ୟ ଅଧିକାର କରି ସେମାନଙ୍କ ବାଣିଜ୍ୟ ଧ୍ୱଂସ କରିବା ପାଇଁ ଚେଷ୍ଟାକଲେ ।



[ ନେପୋଲିୟନ୍ ]

ସେ ମିଶର ଜୟ କରି ଭାରତରେ ଇଂରେଜମାନଙ୍କ କ୍ଷମତା ଲୋପ କରିବା ପାଇଁ ଚେଷ୍ଟା କରୁଥିଲେ, ମାତ୍ର ଇଂରେଜ ନୌସେନାପତି **ନେଲସନ** ନୀଳନଦୀ ମୁହାଣ ନିକଟରେ ଫ୍ରାନ୍ସର ଯୁଦ୍ଧ ଜାହାଜଗୁଡ଼ିକ ଧ୍ୱଂସ କରିବାରୁ ନେପୋଲିୟନ୍ ଫ୍ରାନ୍ସକୁ ପଳାଇ ଆସିଲେ । ସେତେବେଳେ ଫରାସୀ ସରକାର ଦୁର୍ବଳ ହୋଇ ପଡ଼ିଥିଲା । ତେଣୁ ଲୋକେ ବିପ୍ଳବକୁ ସମର୍ଥନ କଲେ ନାହିଁ । ଏପରି ଅବସ୍ଥା ଦେଖି ନେପୋଲିୟନ୍ ସାଧାରଣତନ୍ତ୍ର ଶାସକଙ୍କ ହସ୍ତରୁ ଶାସନକ୍ଷମତା କାଢ଼ିନେଇ ନିଜକୁ ଫ୍ରାନ୍ସର ସର୍ବୋଚ୍ଚ ଶାସକ ବୋଲି ଘୋଷଣା କଲେ ( ୧୭୯୯ ଖ୍ରୀ. ଅ.) । ଏହାପରେ ସେ ଅଷ୍ଟ୍ରିଆକୁ ଦୁଇଟି ଯୁଦ୍ଧରେ ପରାସ୍ତ କଲେ ଏବଂ

ଇଂଲଣ୍ଡକୁ ସନ୍ଧି କରିବାକୁ ବାଧ୍ୟକଲେ (୧୮୦୨ ଖ୍ରୀ. ଅ.)। ୧୮୦୪ ଖ୍ରୀଷ୍ଟାବ୍ଦରେ ନେପୋଲିୟନ ନିଜକୁ ସମ୍ରାଟ ବୋଲି ଘୋଷଣା କରି ରାଜମୁକୁଟ ପରିଧାନ କଲେ। ଏହାଦ୍ୱାରା ଫ୍ରାନ୍ସରେ ପୁଣି ରାଜତନ୍ତ୍ର ଶାସନ ପ୍ରତିଷ୍ଠିତ ହେଲା। ତତ୍ପରେ ସେ ଫ୍ରାନ୍ସର ନୌଶକ୍ତି ବୃଦ୍ଧିକରି ଇଂଲଣ୍ଡ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଥିଲେ। ଇଂରେଜ ନୌସେନାପତି ନେଲ୍ସନ ଫ୍ରାନ୍ସ ଓ ସ୍ପେନର ମିଳିତ ନୌସେନାଙ୍କୁ ୧୮୦୫ ଖ୍ରୀଷ୍ଟାବ୍ଦରେ **ଟ୍ରାଫଲଗାର**ଠାରେ ପରାସ୍ତ କଲେ। ନେପୋଲିୟନ୍ଙ୍କ ଶକ୍ତି ଧ୍ୱଂସ କରିବାପାଇଁ ଇଂଲଣ୍ଡ, ଅଷ୍ଟ୍ରିୟା, ରୁଷିଆ, ସୁଇଡେନ୍ ଓ ପ୍ରସିଆ ମିଳିତ ହୋଇଥିଲେ। ନେପୋଲିୟନ୍ ସେମାନଙ୍କର ମିଳିତ ସେନାଙ୍କୁ ପରାସ୍ତକରି ଅଷ୍ଟ୍ରିଆର ରାଜଧାନୀ ଭିଏନା ଅଧିକାର କଲେ। ୧୮୦୫ ଖ୍ରୀଷ୍ଟାବ୍ଦରେ **ଅଷ୍ଟାରଲିଜ୍** ଯୁଦ୍ଧରେ ରୁଷିଆ ଓ ଅଷ୍ଟ୍ରିଆର ମିଳିତ ସେନାଙ୍କୁ ପରାସ୍ତ କରି ଏବଂ ୧୮୦୬ଖ୍ରୀଷ୍ଟାବ୍ଦରେ ପ୍ରସିଆର ସେନାଙ୍କୁ **ଯେନା** ଯୁଦ୍ଧରେ ପରାସ୍ତ କରିବାରୁ ତାଙ୍କର ଆଧିପତ୍ୟ ପ୍ରାୟ ସମଗ୍ର ୟୁରୋପରେ ପ୍ରତିଷ୍ଠିତ ହେଲା। ୧୮୦୭ ଖ୍ରୀଷ୍ଟାବ୍ଦରେ ରୁଷିଆର ଜାର ଆଲେକ୍‌ଜାଣ୍ଡର ନେପୋଲିୟନ୍ଙ୍କ ସହିତ ସନ୍ଧିକରି ତାଙ୍କର ବନ୍ଧୁ ହୋଇଥିଲେ। ଏହିପରି ନେପୋଲିୟନ ଉନ୍ନତିର ଚରମସୀମାରେ ପହଞ୍ଚିଲେ।

**ନେପୋଲିୟନ୍ଙ୍କ ପତନ**—ଏହାପରେ ଫ୍ରାନ୍ସର ଚିରଶତ୍ରୁ ଇଂଲଣ୍ଡ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା। ଇଂଲଣ୍ଡର ବାଣିଜ୍ୟ ବ୍ୟବସାୟ ଧ୍ୱଂସ କରିବାପାଇଁ ସେ ୟୁରୋପର ସମସ୍ତ ରାଜ୍ୟକୁ ଇଂରେଜଙ୍କ ସହିତ ବାଣିଜ୍ୟ ବନ୍ଦ କରିବାକୁ ଆଦେଶ ଦେଲେ ଓ ଇଂଲଣ୍ଡ ଜାହାଜ ୟୁରୋପରେ କୌଣସି ବନ୍ଦରରେ ପ୍ରବେଶ କରି ପାରିବ ନାହିଁ ବୋଲି ଆଦେଶ ଦେଲେ। ଏହି

ନୀତିକୁ **କଣ୍ଟିନେଣ୍ଟାଲ ସିଷ୍ଟମ** (Continental System) କହନ୍ତି । ଏହି ନୀତି ଘୋଷଣା କରି ସେ ମସ୍ତବଡ଼ ଭୁଲ କଲେ ଓ ଏହା ତାଙ୍କ ପତନର ପ୍ରଧାନ କାରଣ ହେଲା । କାରଣ ସେତେ-ବେଳେ ୟୁରୋପର ଲୋକେ ଇଂଲଣ୍ଡଠାରୁ ନାନାବିଧ ଜିନିଷ କିଣୁଥିଲେ । ତେଣୁ ଇଂଲଣ୍ଡ ସହିତ ବାଣିଜ୍ୟ ସମ୍ପର୍କ ସମ୍ପୂର୍ଣ୍ଣରୂପେ ଛିନ୍ନ କରିବା ସେମାନଙ୍କ ପକ୍ଷରେ ଅସମ୍ଭବ ଥିଲା । ସେମାନେ ନେପୋଲିୟନଙ୍କ ଉପରେ ଇଂଲଣ୍ଡ ସହିତ ଚୋରା ବାଣିଜ୍ୟ କାରବାର ଚଳାଇଲେ । ପର୍ତ୍ତୁଗାଲ ପ୍ରକାଶ୍ୟ ଭାବରେ ନେପୋଲି-ୟନଙ୍କ ଆଦେଶ ଅମାନ୍ୟ କଲା । ନେପୋଲିୟନ ପର୍ତ୍ତୁଗାଲ ଓ ସ୍ପେନ୍ ଉଭୟକୁ ଅଧିକାର କରି ସ୍ପେନ୍‌ରେ ତାଙ୍କର ନିଜଭାଇ ଯୋସେଫ୍‌ଙ୍କୁ ରାଜା କଲେ । ସ୍ପେନ୍‌ର ଲୋକେ ଏଥିରେ ଉତ୍ତ୍ୟକ୍ତ ହୋଇ ପର୍ତ୍ତୁଗାଲର ସହାୟତାରେ ଜାତୀୟ ସଂଗ୍ରାମ ଚଳାଇଲେ । ଏହାକୁ **ପେନିନ୍‌ସୁଲାର ଯୁଦ୍ଧ** ( Peninsular War ) କୁହାଯାଏ । ଏହି ଯୁଦ୍ଧ ୧। ୧୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଚାଲିଥିଲା । ସ୍ପେନର ଏହି ଜାତୀୟ ସଂଗ୍ରାମ ଗ୍ରାମେ ଗ୍ରାମେ, ଘରେ ଘରେ ଚାଲିଥିଲା ଓ ୧୮୧୩ ଖ୍ରୀଷ୍ଟାବ୍ଦରେ ନେପୋଲିୟନଙ୍କ ସୈନ୍ୟମାନେ ସ୍ପେନୀୟ ଜନତାଦ୍ୱାରା ପରାଜିତ ହୋଇଥିଲେ । ପେନିନ୍‌ସୁଲାର ଯୁଦ୍ଧ ଦୀର୍ଘକାଳ ଚଳାଇବା ନେପୋଲିୟନଙ୍କ ଦ୍ୱିତୀୟ ଭୁଲ ଓ ପତନର କାରଣ ଅଟେ ।

ରୁଷିଆ ମଧ୍ୟ ନେପୋଲିୟନଙ୍କ ଆଦେଶ ଅମାନ୍ୟ କରି ଲଣ୍ଡନ ସହିତ ବାଣିଜ୍ୟ ଚଳାଇଲା । ନେପୋଲିୟନ ରୁଷିଆକୁ ଶାସ୍ତି ଦେବାପାଇଁ ୧୮୧୨ ଖ୍ରୀଷ୍ଟାବ୍ଦରେ ଛଅଲକ୍ଷ ସୈନ୍ୟ ନେଇ ରୁଷ ରାଜ୍ୟଧାନୀ ମସ୍କୋ ଅଭିମୁଖରେ ଯାତ୍ରା କଲେ । ରୁଷ ଲୋକେ ନେପୋଲିୟନଙ୍କୁ ବାଧା ନ ଦେଇ ମସ୍କୋ ସହର ପୋଡ଼ିଦେଇ ସେଠାରୁ ପଳାଇ ଗଲେ । ନେପୋଲିୟନ ମସ୍କୋରେ ପହଞ୍ଚି

ଖାଦ୍ୟାଭାବରେ ପଡ଼ିଲେ । ରୁଷିଆର ପ୍ରଚଣ୍ଡ ଶୀତ ଓ ବରଫଝଡ଼ି ସହିତ ଖାଦ୍ୟାଭାବ ହେତୁ ଲକ୍ଷାଧିକ ଫରାସୀ ସୈନ୍ୟ ମୃତ୍ୟୁମୁଖରେ ପଡ଼ିଲେ । ନେପୋଲିୟନ୍ ମାତ୍ର ୨୦ ହଜାର ସୈନ୍ୟ ନେଇ ଫ୍ରାନ୍ସକୁ ଫେରିଲେ । ମସ୍କୋ ଅଭିଯାନ ନେପୋଲିୟନଙ୍କର ଭୁଲ ଓ ପତନର ଅନ୍ୟ ଏକ କାରଣ ଅଟେ ।

ନେପୋଲିୟନ ହୀନବଳ ହୋଇ ପଡ଼ିବାରୁ ଅଷ୍ଟ୍ରିଆ, ପ୍ରୁସିଆ ଓ ରୁଷିଆର ମିଳିତ ସେନା ଫରାସୀ ସୈନ୍ୟଙ୍କ ସହିତ ୧୮୧୩ ଖ୍ରୀଷ୍ଟାବ୍ଦରେ **ଲିପଜିଗ୍** ଠାରେ ଯୁଦ୍ଧ କରି ଫରାସୀମାନଙ୍କୁ ପରାସ୍ତ କଲେ । ନେପୋଲିୟନ ବନ୍ଦୀ ହୋଇ ସିଂହାସନ ଚ୍ୟୁତ ହେଲେ ଓ ଏଲବା ଦ୍ୱୀପକୁ ନିର୍ବାସିତ ହେଲେ । ଅଳ୍ପଦିନ ପରେ ସେ ଏଲବାରୁ ପଳାଇ ଆସି ଫ୍ରାନ୍ସ ସିଂହାସନ ଆରୋହଣ କଲେ । ମାତ୍ର ଏହାର ୧୦୦ ଦିନ ପରେ ସେ ଇଂରେଜ ସେନାପତି ଓ୍ୱେଲିଂଟନ ଓ ପ୍ରୁସିଆର ସେନାପତି ବ୍ଲୁଚରଙ୍କ ଦ୍ୱାରା **ଓ୍ୱାଟରଲୁ** ଯୁଦ୍ଧରେ ପରାସ୍ତ ହୋଇ ବନ୍ଦୀ ହେଲେ । ସେ ସେଣ୍ଟହେଲେନା ଦ୍ୱୀପରେ ନିର୍ବାସିତ ଭାବରେ ୬ବର୍ଷ କାଳ ଅତି ଦୁଃଖରେ କଟାଇ ୧୮୨୧ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ ।

**ନେପୋଲିୟନଙ୍କ ଶାସନ**—ନେପୋଲିୟନ ତାଙ୍କ ଶାସନକାଳ ମଧ୍ୟରେ ଫ୍ରାନ୍ସର ନାନାବିଧ ଉନ୍ନତି କରିଥିଲେ; ସେ ରାଜ୍ୟ ମଧ୍ୟରେ ବହୁ କେନାଲ ଓ ସଡ଼କମାନ ତିଆରି କରାଇ କୃଷି ଓ ବାଣିଜ୍ୟର ଉନ୍ନତି ସାଧନ କରିଥିଲେ, ତାଙ୍କ ପୂର୍ବରୁ ଫ୍ରାନ୍ସର ଆର୍ଥିକଅବସ୍ଥା ଅତି ଶୋଚନୀୟ ହୋଇଥିଲା । ନେପୋଲିୟନ ଅନେକ ବ୍ୟାଙ୍କ ପ୍ରତିଷ୍ଠାକରି ତାହାକୁ ସୁଧାରିବାକୁ ଚେଷ୍ଟା କରିଥିଲେ । ସେ ଶିକ୍ଷାର ଉନ୍ନତି ପାଇଁ ବିଦ୍ୟାଳୟମାନ କରାଇ ଥିଲେ ଏବଂ ପ୍ୟାରିସ ସହରରେ ଅନେକ ସୁନ୍ଦର ପ୍ରାସାଦ ଉଦ୍ୟାନ

କରିବାକୁ ପ୍ରବଳ ଚେଷ୍ଟା ଚଳାଇଥିଲେ । ମାତ୍ର ତତ୍କାଳୀନ ଅଷ୍ଟ୍ରିଆ ରାଜ୍ୟର ବାଧା ଯୋଗୁ ତାହା ସମ୍ଭବପର ହୋଇ ପାରିଲା ନାହିଁ । ୧୮୬୨ ଖ୍ରୀଷ୍ଟାବ୍ଦରେ **ବିସମାର୍କ** ପ୍ରୁସିଆର ରାଜା **ପ୍ରଥମ ଉଇଲିୟମ୍**ଙ୍କ ପ୍ରଧାନମନ୍ତ୍ରୀ ହେଲେ ।

ସେ ଜଣେ ବିଚକ୍ଷଣ କୂଟନୀତିଜ୍ଞ ଥିଲେ । ତାଙ୍କର ନୀତି ଥିଲା, **ଅସି ଓ ରକ୍ତପାତ** ( Blood and iron ) । ତାଙ୍କର ଉଗ୍ର ଯୁଦ୍ଧନୀତି ଯୋଗୁ ୧୮୬୬ ଖ୍ରୀଷ୍ଟାବ୍ଦରେ ଅଷ୍ଟ୍ରିଆ ପ୍ରୁସିଆଦ୍ୱାରା ପରାସ୍ତ ହେଲା । ଏହାପରେ ବିସମାର୍କ ୧୮୭୧ ଖ୍ରୀଷ୍ଟାବ୍ଦରେ ଫରାସୀମାନଙ୍କୁ **ସେଡାନ** ( Sedan ) ଯୁଦ୍ଧରେ ପରାସ୍ତ କରି ଫରାସୀସମ୍ରାଟ ତୃତୀୟ ନେପୋଲିୟନଙ୍କୁ ବନ୍ଦୀ କଲେ । ପ୍ୟାରିସ୍ ନଗରୀ ନିକଟବର୍ତ୍ତୀ ଭର୍ସେଲିସ୍ ଯଦରରେ ବିସମାର୍କ ମହାସମାରୋହରେ ନୂତନ ଜର୍ମାନ ସାମ୍ରାଜ୍ୟର ଜନ୍ମ ଘୋଷଣା କଲେ । ସେହି ସମୟରୁ ୟୁରୋପ ରାଜନୀତିରେ ଜର୍ମାନ ସାମ୍ରାଜ୍ୟ ବିଶିଷ୍ଟ ସ୍ଥାନ ଅଧିକାର କଲା । ଏହିପରି ଭାବରେ ବିସମାର୍କଙ୍କର ଜର୍ମାନ ସାମ୍ରାଜ୍ୟ ଗଠନ ସ୍ୱପ୍ନ ସତ୍ୟରେ ପରିଣତ ହେଲା ।

୧୮୮୮ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଉଇଲିୟମ୍ ଜର୍ମାନୀର 'କାଇଜର' ବା ସମ୍ରାଟ ହେଲେ । ସେ ବିସମାର୍କଙ୍କୁ ମନ୍ତ୍ରୀ ପଦରୁ ଅବ୍ୟାହତି ଦେଇ ନିଜେ ଜର୍ମାନୀର ଭାଗ୍ୟନିୟନ୍ତା ହେଲେ । ଜର୍ମାନ ଜାତିକୁ ଶ୍ରେଷ୍ଠ ଜାତି ବୋଲି ଘୋଷଣା କରି ସମଗ୍ର ପୃଥିବୀରେ ଏକ ବିଶାଳ ଜର୍ମାନ ସାମ୍ରାଜ୍ୟ ଗଠନକରିବାକୁ ସେ ଇଚ୍ଛା କରୁଥିଲେ । ଏହିପରି ଭାବରେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜର୍ମାନ ସାମ୍ରାଜ୍ୟ ପୃଥିବୀରେ ଏକ ଶକ୍ତିଶାଳୀ ସାମ୍ରାଜ୍ୟରୂପେ ପ୍ରତିଷ୍ଠିତହୋଇଥିଲା ।

ୟୁରୋପରେ ବିଭିନ୍ନ ପ୍ରକାର ବୈଜ୍ଞାନିକ ଯନ୍ତ୍ରପାତି କଳ-କବଜାର ଉଦ୍ଭାବନ ହେବା। ଫଳରେ ୟୁରୋପୀୟମାନେ ଯନ୍ତ୍ରଚାଳିତ ଯାନମାନଙ୍କ ସାହାଯ୍ୟରେ ପୃଥିବୀର ଚାରିଆଡେ ବାଣିଜ୍ୟ କାରବାର ଚଳାଇଲେ ଓ ଉପନିବେଶ ସ୍ଥାପନ କଲେ । ବ୍ରିଟିଶ୍ ଦ୍ୱୀପପୁଞ୍ଜ ଏ ଦିଗରେ ଅଧିକ ଉନ୍ନତ ହୋଇଥିବାରୁ ଇଂଲଣ୍ଡୀୟ ଲୋକେ ଅନ୍ୟମାନଙ୍କ ଅପେକ୍ଷା ସମୁଦ୍ରରେ ବେଶୀ ପ୍ରଭାବ ବିସ୍ତାର କରିଥିଲେ ଓ ଅନ୍ୟାନ୍ୟ ଦେଶରେ ଉପନିବେଶ ସ୍ଥାପନ କରିଥିଲେ । ଶିଳ୍ପ ଓ ଯନ୍ତ୍ରବିପ୍ଳବ ଫଳରେ ୟୁରୋପୀୟ ଦେଶମାନଙ୍କ ମଧ୍ୟରେ ବାଣିଜ୍ୟ ଓ ସାମ୍ରାଜ୍ୟ ବିସ୍ତାର ପାଇଁ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଲାଗି ରହିଥିଲା । ଯେଉଁମାନେ ଅଧିକ ସୁବିଧା ଓ ସୁଯୋଗ ପାଇଲେ ସେମାନେ ଅନ୍ୟମାନଙ୍କୁ ସେହି ସୁବିଧାରୁ ବଞ୍ଚିତ କରିବା ପାଇଁ ନାନା ଉପାୟ ଅବଲମ୍ବନ କଲେ । ଯେଉଁମାନେ ସେହି ସୁବିଧା ଓ ସୁଯୋଗ ପାଇଲେ ନାହିଁ । ସେମାନଙ୍କ ମନରେ ଅସନ୍ତୋଷ ଓ ହିଂସାର ଅଗ୍ନି ଜଳୁଥିଲା । ଜର୍ମାନୀ ସେହି ଅସନ୍ତୁଷ୍ଟ ଦେଶମାନଙ୍କ ମଧ୍ୟରେ ପ୍ରଧାନ ।

**ପ୍ରଥମ ପୃଥିବୀ ମହାସମରର କାରଣ**—ଊନବିଂଶ ଶତାବ୍ଦୀର ଶେଷବେଳକୁ ଜର୍ମାନ ଅତ୍ୟନ୍ତ ଶକ୍ତିଶାଳୀ ହୋଇଥିଲା । ୟୁରୋପର ଅନ୍ୟ ଦୁଇଟି ଶକ୍ତିଶାଳୀ ରାଜ୍ୟ ଅଷ୍ଟ୍ରିଆ ଓ ଇଟାଲୀ ସହିତ ତ୍ରିଶକ୍ତି ସନ୍ଧି କରିବାରୁ ଜର୍ମାନୀର କ୍ଷମତା ଅତ୍ୟଧିକ ବୃଦ୍ଧି ପାଇଥିଲା । ବିଂଶ ଶତାବ୍ଦୀ ଆରମ୍ଭରେ ଦ୍ୱିତୀୟ ଉଇଲିୟମ୍ ଜର୍ମାନୀର ନୌଶକ୍ତି ଓ ସୈନ୍ୟବଳ ଅତି ଦ୍ରୁତଗତିରେ ବଢ଼ାଇବାକୁ ଲାଗିଲେ । ଏହା ଦେଖି ଫ୍ରାନସ ଓ ଇଂଲଣ୍ଡ ଆତଙ୍କ ଗଣିଲେ । ୧୯୦୭ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ, ଇଂଲଣ୍ଡ ଓ ରୁଷିଆ ତ୍ରିଶକ୍ତି ଚୁକ୍ତି (Triple Entente) ରେ ଆବଦ୍ଧ ହେଲେ । ପ୍ରତ୍ୟେକ

ଦେଶରେ ଯୁଦ୍ଧ ସଜ୍ଜା ଚାଲିଲା । ଅତଏବ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ୟୁରୋପର ଶକ୍ତିଶାଳୀ ରାଜ୍ୟଗୁଡ଼ିକ ଦୁଇଟି ସାମରିକ ଗୋଷ୍ଠୀରେ ବିଭକ୍ତ ହେବାର ଦେଖାଗଲା । ଏକ ପକ୍ଷରେ ଜର୍ମାନୀ, ଅଷ୍ଟ୍ରିଆ ଓ ଇଟାଲୀ ଏବଂ ଅନ୍ୟ ପକ୍ଷରେ ଇଂଲଣ୍ଡ, ଫ୍ରାନ୍ସ ଓ ରୁଷିଆ ରହିଲେ । ଏହି ଦଳ ମଧ୍ୟରେ ଯେ କୌଣସି ମୁହୂର୍ତ୍ତରେ ଯୁଦ୍ଧ ଲାଗିଯିବ ବୋଲି ନିଶ୍ଚିତ ଭାବରେ ଜଣାପଡୁଥିଲା ।

ଏହିପରି ସମୟରେ ୧୯୧୪ ଖ୍ରୀଷ୍ଟାବ୍ଦରେ ହଠାତ୍ ଅଷ୍ଟ୍ରିଆର ରାଜକୁମାର ଫ୍ରାନ୍‌ସିସ୍ ଫର୍ଡିନାଣ୍ଡ ବୋସ୍‌ନିଆର ରାଜଧାନୀ ସେରାଜେଭୋଠାରେ ଜଣେ ସର୍ବିଆର ଆତତାୟୀ ଦ୍ୱାରା ନିହତ ହେଲେ । ତେଣୁ ଅଷ୍ଟ୍ରିଆ କ୍ଷୁଦ୍ର ସର୍ବିଆ ରାଜ୍ୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ରୁଷିଆ ସର୍ବିଆକୁ ସାହାଯ୍ୟ କଲା । ଏହା ଦେଖି ଜର୍ମାନୀ ରୁଷିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ଫ୍ରାନ୍ସ ରୁଷିଆର ବନ୍ଧୁ ହେତୁ ରୁଷିଆ ସପକ୍ଷରେ ଯୁଦ୍ଧ କଲା । ଜର୍ମାନୀ ନିରପେକ୍ଷ ବେଲଜିୟମ ମଧ୍ୟଦେଇ ଫ୍ରାନ୍ସ ବିରୁଦ୍ଧରେ ଯୁଦ୍ଧ ଯାତ୍ରା କରିବାରୁ ଇଂଲଣ୍ଡ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧଘୋଷଣା କଲା । କ୍ରମେ ତୁର୍କୀ ଓ ବୁଲ୍‌ଗେରିଆ ଜର୍ମାନୀ ପକ୍ଷରେ ଏବଂ ଇଟାଲୀ ଓ ଜାପାନ ଇଂଲଣ୍ଡ ପକ୍ଷରେ ଯୋଗ ଦେଲେ । ଏହିପରି ୟୁରୋପରେ ଆରମ୍ଭ ହୋଇଥିବା ଯୁଦ୍ଧ ପୃଥିବୀ ମହାସମରରେ ପରିଣତ ହେଲା ।

**ଯୁଦ୍ଧର ଗତି**—ଏହି ଯୁଦ୍ଧ ଦୀର୍ଘ ଚାରିବର୍ଷ କାଳ ଚାଲିଲା (୧୯୧୪ଖ୍ରୀ:ଅ:—୧୯୧୮ ଖ୍ରୀ:ଅ:) । ପ୍ରଥମେ ପ୍ରଥମେ ଜର୍ମାନୀ ଜୟଯୁକ୍ତ ହେବାକୁ ଲାଗିଲା । ଜର୍ମାନୀ ବୁଡ଼ାଜାହାଜ ଚଳାଇ ଇଂଲଣ୍ଡ ଓ ଫ୍ରାନ୍ସ ପ୍ରଭୃତି ଶତ୍ରୁ ରାଜ୍ୟର ଜାହାଜଗୁଡ଼ିକ ସମୁଦ୍ରରେ ବୁଡାଇଲା । ଏପରିକି ଜର୍ମାନୀ ନିରପେକ୍ଷ ଯୁକ୍ତରାଷ୍ଟ୍ର ଜାହାଜଗୁଡ଼ିକ ମଧ୍ୟ ବୁଡ଼ାଇଲା । ତେଣୁ ଆମେରିକା ଜର୍ମାନୀ

ବିରୁଦ୍ଧରେ ୧୯୧୭ ଖ୍ରୀଷ୍ଟାବ୍ଦରେ ଯୁଦ୍ଧ ଘୋଷଣା କଲା । ଏହାଦ୍ୱାରା ଯୁଦ୍ଧର ଗତି ବଦଳିଗଲା । ଜର୍ମାନୀ ଶେଷରେ ପରାସ୍ତ ହେଲା । ଜର୍ମାନୀର ସମ୍ରାଟ ଦ୍ୱିତୀୟ ଉଇଲିୟମ୍ ସିଂହାସନ ଛାଡ଼ି ପଳାଇ ଗଲେ । ୧୯୧୮ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ପୃଥିବୀମହାଯୁଦ୍ଧର ଅବସାନ ହେଲା ।

**ଯୁଦ୍ଧର ଫଳାଫଳ**—ଏହି ଯୁଦ୍ଧରେ ପ୍ରାୟ ୭୦ ଲକ୍ଷ ଲୋକ ନିହତ ହୋଇଥିଲେ ଏବଂ ପ୍ରାୟ ୧୪୦ ଲକ୍ଷ ଲୋକ ଆହତ ହୋଇଥିଲେ । ପୃଥିବୀରେ ଅନ୍ନବସ୍ତ୍ର ଓ ବାସଗୃହର ଅଭାବ, ରୋଗ ଓ ମଡ଼କ ଏବଂ ଜିନିଷପତ୍ରର ଚଡ଼ା ଦରଦାମ୍ ହେତୁ ଲୋକେ ବହୁ କଷ୍ଟ ଭୋଗ କଲେ । ୧୯୧୯ ଖ୍ରୀଷ୍ଟାବ୍ଦରେ ଭର୍ସେଲିସଠାରେ ଜର୍ମାନୀ ମିତ୍ରଶକ୍ତିଦ୍ୱାରା ପ୍ରସ୍ତୁତ ସନ୍ଧିପତ୍ରରେ ସ୍ୱାକ୍ଷର କଲା ।

**ଭର୍ସେଲିସ୍ ସନ୍ଧି**—ଏହି ସନ୍ଧି ଅନୁସାରେ ଜର୍ମାନୀର କେତେକ ଅଞ୍ଚଳ ଫ୍ରାନ୍ସ, ବେଲ୍‌ଜିୟମ୍ ଓ ପୋଲାଣ୍ଡ ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଜର୍ମାନୀର ସୈନ୍ୟସଂଖ୍ୟା, ଜାହାଜ ଓ ଅସ୍ତ୍ରଶସ୍ତ୍ର ବହୁ ପରିମାଣରେ କମାଇ ଦିଆଗଲା । ଜର୍ମାନୀର ଉପନିବେଶଗୁଡ଼ିକ ମିତ୍ରଶକ୍ତି ବାଣ୍ଟିନେଲେ । ଜର୍ମାନୀକୁ ଅଜସ୍ର ଅର୍ଥ କ୍ଷତିପୂରଣ ବାବଦରେ ଦେବାକୁ ବାଧ୍ୟ କରାଗଲା । ଅଷ୍ଟ୍ରିଆ ଓ ତୁର୍କିସ୍ଥ ସାମ୍ରାଜ୍ୟ ଭାଙ୍ଗି ଦିଆଗଲା ।

**ଜାତିସଂଘ**—ଏହି ଯୁଦ୍ଧପରେ ଆମେରିକାର ସଭାପତି ଉଇଲ୍‌ସନ୍‌ଙ୍କ ପରାମର୍ଶ ଅନୁସାରେ ସୁଇଜରଲାଣ୍ଡର ଜେନିଭାଠାରେ ପୃଥିବୀର ବହୁ ଜାତିର ପ୍ରତିନିଧି ମିଳିତ ହୋଇ **ବିଶ୍ୱଜାତିସଂଘ** ( League of Nations ) ଗଠନ କଲେ । ପୃଥିବୀରେ ଭବିଷ୍ୟତରେ ଯେପରି ଭୟଙ୍କର ଯୁଦ୍ଧ ନ ହୁଏ ଓ ଚିରଆଡ଼େ ଶାନ୍ତି ବିରାଜମାନ କରେ ଏହି ଦୃଷ୍ଟିରୁ ଜାତିସଂଘ ଚେଷ୍ଟା କରିବ

ବୋଲି ଏହା ଗଠିତ ହୋଇଥିଲା; ମାତ୍ର ଏଥିରେ ଆମେରିକା, ରୁଷିଆ ପ୍ରଭୃତି ବହୁ ବଡ଼ ଶକ୍ତିଶାଳୀ ରାଜ୍ୟ ଯୋଗ ନ ଦେବାରୁ ଏବଂ ଶକ୍ତିଶାଳୀ ଜାତିମାନଙ୍କ ସ୍ୱାର୍ଥପର ମତି ହେତୁ ଏହାର ମହତ୍ ଉଦ୍ଦେଶ୍ୟ ସାଧିତ ହୋଇ ପାରିଲା ନାହିଁ । ପ୍ରଥମ ମହାସମରର ପ୍ରାୟ ୨୦ ବର୍ଷ ପରେ ପୁଣି ଦ୍ୱିତୀୟ ମହାସମର ଆରମ୍ଭ ହେଲା ।

## ରୁଷ ବିପ୍ଳବ

ୟୁରୋପରେ ପ୍ରଥମ ମହାସମର ଚାଲିଥିବାବେଳେ ୧୯୧୭ ଖ୍ରୀଷ୍ଟାବ୍ଦରେ ରୁଷରେ ଏକ ବିପ୍ଳବ ଆରମ୍ଭ ହୋଇଥିଲା । ଊନବିଂଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ରୁଷିଆ ପୃଥିବୀରେ ଏକ ଅନୁନ୍ନତ ରାଜ୍ୟ ଥିଲା । ରୁଷିଆର ସ୍ୱେଚ୍ଛାଚାରୀ ଓ ବିଳାସବ୍ୟସନ-ପ୍ରିୟ ଜାର୍‌ମାନଙ୍କ ଦ୍ୱାରା ପ୍ରଜାମାନେ ନିର୍ମମ ଭାବରେ ଅତ୍ୟାଚାରିତ ଓ ଶୋଷିତ ହେଉଥିଲେ । ଚାଷୀ ମୂଲିଆମାନଙ୍କୁ ନାନା ପ୍ରକାର କର ଦେବାକୁ ପଡ଼ୁଥିଲା ଏବଂ ସେମାନେ ଆବଶ୍ୟକ ପରିମାଣରେ ଖାଦ୍ୟ ବସ୍ତ୍ର ପାଇ ପାରୁ ନ ଥିଲେ । ନାନା ନିର୍ଯ୍ୟାତନା ଭୋଗକରି ଜନସାଧାରଣଙ୍କ ମନରେ ବିପ୍ଳବର ନିଆଁ ଜୁହୁଳୁ ଥିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଟଲ୍‌ଷ୍ଟୟ୍ ନାମକ ଜଣେ ଶକ୍ତିଶାଳୀ ଲେଖକ ରୁଷିଆର ସାମାଜିକ ଅବନତିର ବିଷୟ ଜୀବନ୍ତଭାବରେ ତାଙ୍କ ଲେଖାରେ ପ୍ରକାଶ କରିବାକୁ ଲାଗିଲେ । ତାଙ୍କର ଲେଖାଗୁଡ଼ିକ ରୁଷିଆର ଜନସାଧାରଣଙ୍କ ମଧ୍ୟରେ ନୂତନ ଚେତନା ଓ ଜାଗରଣ ସୃଷ୍ଟି କଲା ।

୧୯୦୫ ଖ୍ରୀଷ୍ଟାବ୍ଦରେ ଜାପାନ ଭଳି ଏକ କ୍ଷୁଦ୍ରରାଜ୍ୟର ସୈନ୍ୟମାନେ ବିରାଟ ରୁଷିଆର ସୈନ୍ୟମାନଙ୍କୁ ପରାସ୍ତ କରିଦେଲେ ।

ଏହି ଯୁଦ୍ଧ ଫଳରେ ରୁଷିଆରେ ଖାଦ୍ୟ ଓ ବସ୍ତ୍ରର ବିଶେଷ ଅଭାବ ଦେଖାଗଲା । ଖାଦ୍ୟାଭାବରେ ପ୍ରପୀଡ଼ିତ ଜନସାଧାରଣଙ୍କ କରୁଣ ନିବେଦନ ପ୍ରତି କର୍ଣ୍ଣପାତ ନ କରି ଜାର୍ **ଦ୍ୱିତୀୟ ନିକୋଲାସ** ସେମାନଙ୍କୁ ରାଜଦ୍ରୋହୀ ବୋଲି ଅଭିଯୁକ୍ତ କରି ସେମାନଙ୍କ ଉପରେ ଗୁଳି ଚଳାଇବା ପାଇଁ ସୈନ୍ୟମାନଙ୍କୁ ଆଦେଶ ଦେଲେ । ତେଣୁ ଦରିଦ୍ର ଲୋକେ ଅଧିକ ଉତ୍ତ୍ୟକ୍ତ ହୋଇ ବିଦ୍ରୋହ କରିବାକୁ ଆୟୋଜନ କଲେ । ଶ୍ରମିକମାନଙ୍କ ମଧ୍ୟରେ **ସୋଭିଏଟ୍** ବା ସମିତିମାନ ଗଠିତ ହେଲା ଓ ସମିତିର ନିର୍ଦ୍ଦେଶରେ ଧର୍ମଘଟ ଏବଂ ହରତାଳ ପାଳିତ ହେଲା । ଏହି ଧର୍ମଘଟକୁ ନେତୃତ୍ୱ ଦେଲେ ମାର୍କସପନ୍ଥୀ **ଲେନିନ ଓ ଟ୍ରଟସ୍କି** । ଜାର ଏହି ବିପ୍ଳବକୁ ଭୀଷଣ ଭାବରେ ଦମନ କରିବାପାଇଁ ଦେଶସାରା ଗଠିତ ହୋଇଥିବା ସୋଭିଏଟ୍‌ଗୁଡ଼ିକ ବେଆଇନ ବୋଲି ଘୋଷଣା କରିଥିଲେ । ଏହି ସମୟରେ ବିପ୍ଳବୀନେତା ଲେନିନ୍ ଓ ଟ୍ରଟସ୍କି ପ୍ରାଣଭୟରେ ରୁଷିଆ ଛାଡ଼ି ବିଦେଶକୁ ପଳାଇଲେ ।

ପ୍ରଥମ ମହାସମରରେ ଯୋଗଦେଇ ଜାର ଦ୍ୱିତୀୟ ନିକୋଲାସ ଲକ୍ଷ ଲକ୍ଷ ସୈନ୍ୟ ଯୁଦ୍ଧକ୍ଷେତ୍ରକୁ ପ୍ରେରଣ କରିଥିଲେ । କିନ୍ତୁ ସେମାନଙ୍କ ପାଇଁ ଆବଶ୍ୟକ ପରିମାଣ ଖାଦ୍ୟ ଓ ଗୋଳାବାରୁଦ ଯୋଗାଇ ପାରିଲେ ନାହିଁ । ଫଳରେ ରୁଷର ଅସଂଖ୍ୟ ସୈନ୍ୟ ସୁଶିକ୍ଷିତ ଜର୍ମାନୀ ସୈନ୍ୟଙ୍କଦ୍ୱାରା ନିହତ ହେଲେ । ଏଣେ ରୁଷ୍ ଦେଶ ମଧ୍ୟରେ ଭୀଷଣ ଖାଦ୍ୟାଭାବ ହେଲା । ୧୯୧୭ ଖ୍ରୀଷ୍ଟାବ୍ଦରେ ଶ୍ରମିକମାନେ ପ୍ରୋଟୋଗ୍ରାଡ଼ଠାରେ ଧର୍ମଘଟ ଆରମ୍ଭ କଲେ । ଜାର ଧର୍ମଘଟକାରୀଙ୍କ ଉପରେ ଗୁଳି ଚଳାଇବା ପାଇଁ ସୈନ୍ୟ ପ୍ରେରଣ କଲେ, ମାତ୍ର ସେମାନେ ଧର୍ମଘଟକାରୀଙ୍କ ଉପରେ ଗୁଳି ନ ଚଳା ଧର୍ମଘଟକାରୀଙ୍କ ସହିତ ଯୋଗଦେଲେ । ଏହି

ବିପ୍ଳବ ଅତି ଶୀଘ୍ର ବିଭିନ୍ନ ସହର ଓ ଗ୍ରାମମାନଙ୍କରେ ବ୍ୟାପିଗଲା । ଦ୍ୱିତୀୟ ନିକୋଲାସ୍ ପ୍ରାଣ ଭୟରେ ସିଂହାସନ ତ୍ୟାଗକଲେ । ବିଦ୍ରୋହୀମାନେ ତାଙ୍କୁ ସପରିବାର ହତ୍ୟାକରି ରୁଷିଆରୁ ସ୍ୱେଚ୍ଛାଚାରୀ ଜାର ଶାସନର ମୂଳୋତ୍ପାଟନ କଲେ । ଏହି ସମୟରେ ଲେନିନ୍ ଓ ଟ୍ରଟ୍‌ସ୍କି ବିଦେଶରୁ ଫେରିଆସି ବିପ୍ଳବର ନେତୃତ୍ୱ ଗ୍ରହଣ କଲେ । ଲେନିନ୍ **ବଲସେଭିକ ଦଳର** ନେତା ଥିଲେ । ଜାର୍‌ଙ୍କ କବଳରୁ ରୁଷିଆ ମୁକ୍ତ ହେଲାପରେ ବିପ୍ଳବୀ ନେତା କରେନ୍‌ସ୍କି ଏକ ଅସ୍ଥାୟୀ ସରକାର ଗଠନ କରି **ଡୁମା** ବା ପାର୍ଲିଆମେଣ୍ଟ ସାହାଯ୍ୟରେ ରୁଷର ଶାସନକାର୍ଯ୍ୟ ଚଳାଇଲେ । କରେନ୍‌ସ୍କି ଜର୍ମାନ ବିରୁଦ୍ଧରେ ଯୁଦ୍ଧ ଚଳାଇବାପାଇଁ ରୁଷ ସୈନ୍ୟମାନଙ୍କୁ ଆଦେଶ ଦେଲେ; ମାତ୍ର ସେମାନଙ୍କୁ ଖାଦ୍ୟ ଯୋଗାଇବାକୁ ଅସମର୍ଥ ହେବାରୁ ଅସ୍ଥାୟୀ ସରକାରର ପତନ ହେଲା । ରୁଷିଆର ଶାସନ କ୍ଷମତା ଲେନିନ୍‌ଙ୍କ ହସ୍ତଗତ ହେଲା । ଏହି ବିଜୟ ଫଳରେ ଶ୍ରମୀ-ମୂଲିଆଙ୍କ ସରକାର ପ୍ରତିଷ୍ଠିତ ହେଲା । ସେହି ଦିନରୁ ରୁଷିଆର ନାମହେଲା ୟୁନିୟନ ଅଫ୍ ସୋଭିଏଟ୍ ସୋସିଲିଷ୍ଟ ରିପବ୍ଲିକସ୍ (Union of Soviet socialist Republics)

## ଲେନିନ୍

ଲେନିନ୍ ୧୮୭୦ ଖ୍ରୀଷ୍ଟାବ୍ଦରେ ରୁଷିଆର ଏକ କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରକୃତ ନାମ ବ୍ଲାଡ଼ିମିର ଇଲିଚ ୟୁଲିଆନୋଭ । ଲେନିନ୍‌ଙ୍କ ବାଲ୍ୟାବସ୍ଥାରେ ତାଙ୍କର ବଡ଼ଭାଇ ଜାର୍‌ଙ୍କଦ୍ୱାରା ଫାଶୀଦଣ୍ଡରେ ଦଣ୍ଡିତ ହୋଇଥିଲେ । ଲେନିନ୍ ବାଳକ ଥିଲେ ମଧ୍ୟ ତାଙ୍କ ଭାଇଙ୍କ ହତ୍ୟାରେ ମର୍ମାହତ ହୋଇ ପଡ଼ିଥିଲେ ଓ ଜାର୍ ସରକାରର ମୂଳୋତ୍ପାଟନ କରିବାକୁ ପ୍ରତିଜ୍ଞା କରିଥିଲେ । ସେ ଜନସାଧାରଣଙ୍କ ମଧ୍ୟରେ ବିଦ୍ରୋହ

ଘବ ପ୍ରଚ୍ୱର କରୁଥିବା ହେତୁ ସାଇବେରଆରେ କଷ୍ଟୁଦନ ନିର୍ବାସିତ ଦଣ୍ଡ ଭୋଗ କରଥିଲେ । ତଥାପି ତାଙ୍କର ବୈପ୍ଳବିକ ମନୋବୃତ୍ତି ଅକ୍ଷୁଣ୍ଣ ରହିଥିଲ । ସେତେବେଳେ ରୁଷିଆର ସୋସିଏଲ ଡ଼ମୋକ୍ରାଟିକ ନାମକ ଏକ ବିପ୍ଳବୀ ଦଳ ଜାର୍‌ଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଇଥିଲ । ଲେନିନ୍ ସେହି ଦଳରେ ଜଣେ ବଶିଷ୍ଟ ସଭ୍ୟ ରୂପେ ଯୋଗଦେଇଥିଲେ । ୧୯୦୩ ଖ୍ରୀଷ୍ଟାବ୍ଦରେ ଲଣ୍ଡନ-ଠାରେ ସୋସିଏଲ୍ ଡ଼ମୋକ୍ରାଟିକ୍ ଦଳର ଏକ ସଭା ହୋଇଥିଲ । ସେଠାରେ ଏହି ଦଳ **ମେନସେଭିକ୍ ଓ ବଲସେଭିକ୍** ଏହି ଦୁଇଟି ଭାଗରେ ବିଭକ୍ତ ହୋଇଥିଲ । ଲେନିନ୍ ବଲସେଭିକ୍ ଦଳର ନେତା ହେଲେ । ୧୯୦୫ ଖ୍ରୀଷ୍ଟାବ୍ଦରେ ରୁଷିଆରେ ବିଦ୍ରୋହ ଦମନ ହେଲବେଳେ ଲେନିନ୍ ଓ ଟ୍ରଟ୍‌ସ୍କି ଗୁପ୍ତଭାବରେ ରୁଷବିପ୍ଳବ ଚଳାଇଲେ । ସେ ରୁଷ ବିପ୍ଳବରେ ଜୟଯୁକ୍ତ ହୋଇ ପ୍ରଥମେ ଜର୍ମାନୀ ସହିତ ଚାଲିଥିବା ପ୍ରଥମ ମହାସମରରୁ କ୍ଷାନ୍ତ ହେବାପାଇଁ ଜର୍ମାନୀ ସହିତ ସନ୍ଧି କଲେ । ସାମ୍ୟବାଦ ମାତ୍ର ତାଙ୍କର ଆଦର୍ଶ ଥିବାରୁ ସେ ଦେଶରେ ସାମ୍ୟବାଦ ପ୍ରତିଷ୍ଠା କଲେ । କୃଷୀ ମୂଲଆଙ୍କର ଅର୍ଥନୈତିକ ଉନ୍ନତି ସେତେବେଳର ପ୍ରଧାନ ସମସ୍ୟା ଥିଲ । ଲେନିନ୍ ଦେଶର ସବୁ ଜମିବାଡ଼ ଜମିମାଲିକଙ୍କ ପାଖରୁ ଆଣି କୃଷକମାନଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ଏହାଦ୍ୱାରା ଦେଶରୁ ପୁଞ୍ଜିବାଦ ଲୋପହେଲ । ରୁଷିଆରେ ଏପରି ନୂତନ ସମାଜ ଗଠିତ ହେବା ଦେଖି ଏହାର ପ୍ରଭାବ ୟୁରୋପର ଅନ୍ୟାନ୍ୟ ରାଜ୍ୟରେ ପଡ଼ିବାର ସମ୍ଭାବନା ଥିଲ । ତେଣୁ ରୁଷିଆର ଏହି ବିରାଟ ପରିବର୍ତ୍ତନରେ ଇଂଲଣ୍ଡ, ଫ୍ରାନ୍‌ସ, ଆମେରିକା ପ୍ରଭୃତି ଆତଙ୍କିତ ହୋଇ ରୁଷିଆକୁ ଆକ୍ରମଣ କଲେ । ମାତ୍ର ଲେନିନ୍ ସେମାନଙ୍କୁ ପରାସ୍ତ କରଥିଲେ । ଏହାପରେ ସେ ଅକ୍ଳାନ୍ତ ପରିଶ୍ରମ କରି ଦେଶରୁ ଖାଦ୍ୟାଭାବ,

ଅରାଜକତା ଓ ଅଶାନ୍ତ ଦୂର କଲେ । ରୁଷିଆରେ ସାମ୍ୟବାଦ ତାଙ୍କର ଯୋଗୁ ଦୃଢ଼ଭାବରେ ପ୍ରତିଷ୍ଠିତ ହେଲା । ୧୯୨୪ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ହେଲା ।

**ଷ୍ଟାଲିନ** – ଲେନିନ୍‌ଙ୍କ ମୃତ୍ୟୁପରେ ଷ୍ଟାଲିନ୍ ରୁଷିଆର ଶାସନ କ୍ଷମତା ହସ୍ତଗତ କଲେ । ତାଙ୍କ ଅମଳରେ ରୁଷିଆରେ ବ୍ୟକ୍ତିଗତ ସମ୍ପତ୍ତି ଲୋପ ପାଇଥିଲା ଓ କଳକାରଖାନାଗୁଡ଼ିକ ସରକାରଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହେବା । ଦେଶରେ ବଡ଼ ବଡ଼ କୃଷିକ୍ଷେତ୍ର ପ୍ରସ୍ତୁତ ହୋଇ କୋଠଚାଷର ପ୍ରଚଳନ ହେଲା । ଦେଶରେ ବହୁବାର ଯୋଜନାମାନ କାର୍ଯ୍ୟକାରୀ କରି ସେ କୃଷି ଓ ଶିଳ୍ପର ଉନ୍ନତି ଘଟାଇଥିଲେ । ତାଙ୍କ ନେତୃତ୍ୱରେ ରୁଷିଆ ଦ୍ୱିତୀୟ ମହାଯୁଦ୍ଧରେ ଜୟଯୁକ୍ତ ହୋଇ ପୃଥିବୀରେ ଏକ ପ୍ରଧାନ ଶକ୍ତିଶାଳୀ ରାଜ୍ୟରୂପେ ପରିଣତ ହେଲା । ବର୍ତ୍ତମାନ ଆଲେକ୍‌ସେଇ କୋସିଗିନ ରୁଷିଆର ପ୍ରଧାନମନ୍ତ୍ରୀ ଅଟନ୍ତି । ଆଧୁନିକ ରୁଷିଆରେ ଶିଳ୍ପ ଓ ବିଜ୍ଞାନର ପ୍ରଭୂତ ଉନ୍ନତି ସାଧିତ ହେବାରୁ ଏହା ବର୍ତ୍ତମାନ ପୃଥିବୀର ଶ୍ରେଷ୍ଠ ଧନଶାଳୀ ଦେଶ ଯୁକ୍ତରାଷ୍ଟ୍ରର ସମକକ୍ଷ ହେବାକୁ ବସିଲାଣି ।

---

# ଦ୍ୱାବିଂଶ ଅଧ୍ୟାୟ

## ଆଧୁନିକ ସଭ୍ୟତା

ଆଧୁନିକ ଯୁଗରେ ବିଜ୍ଞାନର ସାଧାରଣ ଉନ୍ନତି ଘଟିବାରୁ ମନୁଷ୍ୟର ସୁଖ ସ୍ୱାଚ୍ଛନ୍ଦ୍ୟ ବହୁ ଗୁଣରେ ବଢ଼ି ଯାଇଛି ଏବଂ ମନୁଷ୍ୟର ଜୀବନଯାତ୍ରା ପ୍ରଣାଳୀରେ ବହୁ ପରିବର୍ତ୍ତନ ଘଟିଛି । ବିଜ୍ଞାନ ସାହାଯ୍ୟରେ ମନୁଷ୍ୟ ଆଧୁନିକ ଯୁଗରେ ପ୍ରକୃତିକୁ ଜୟ କରିବାରେ ବହୁ ପରିମାଣରେ ସମର୍ଥ ହୋଇଛି । ଉଡ଼ାଜାହାଜର

ଉଦ୍ଭାବନ ହେତୁ ମନୁଷ୍ୟ ଆଜ ଆକାଶରେ ପକ୍ଷୀପରି ଉଡ଼ି ଅତି ଅଳ୍ପ ସମୟ ମଧ୍ୟରେ ପୃଥିବୀର ଏକ ପାର୍ଶ୍ୱରୁ ଅପର ପାର୍ଶ୍ୱକୁ ଯାଇପାରୁଛି । ବିରାଟ ଜଳଜାହାଜ ନିର୍ମାଣ କରି ମନୁଷ୍ୟ ସ୍ୱଚ୍ଛନ୍ଦରେ ଅଗାଧ ସମୁଦ୍ର ଅତିକ୍ରମ କରି ପୃଥିବୀର ବିଭିନ୍ନ ସ୍ଥାନକୁ ଯାଇ ପାରୁଛି । ବେତାର ଯନ୍ତ୍ର ଉଦ୍ଭାବନ କରି ମନୁଷ୍ୟ ପୃଥିବୀର ଏକ ପାର୍ଶ୍ୱରେ ବସି ମୁହୂର୍ତ୍ତକ ମଧ୍ୟରେ ଅପରପାର୍ଶ୍ୱରୁ ଖବର ପାଇ ପାରୁଛି । ଟେଲିଭିଜନ ଯନ୍ତ୍ର ଉଦ୍ଭାବିତ ହେବାଦ୍ୱାରା ମନୁଷ୍ୟ ଏକ ସ୍ଥାନରେ ବସି ହଜାର ହଜାର କିଲୋମିଟର ଦୂରର ଦୃଶ୍ୟ ଦେଖି ପାରୁଛି ଓ ଶୁଣି ପାରୁଛି । ମୋଟ ଉପରେ ରେଳ, ମଟର, ଉଡ଼ାଜାହାଜ, ରକେଟ୍‌, ଟେଲିଫୋନ, ବେତାର ଯନ୍ତ୍ର ଓ ଟେଲିଭିଜନ ଆଦି ବୈଜ୍ଞାନିକ ଯନ୍ତ୍ରର ଉଦ୍ଭାବନ କରି ମନୁଷ୍ୟ ସମୟ ଓ ଦୂରତାକୁ ଜୟ କରି ପାରିଛି । ଏପରି କି ମନୁଷ୍ୟ ଚନ୍ଦ୍ର ଉପଗ୍ରହରେ ବସବାସ କରିବା ପାଇଁ ଅଭିଯାନ ଚଳାଇଲଣି । ଅନ୍ୟ ଦିଗରେ ମନୁଷ୍ୟ ବୈଜ୍ଞାନିକ ଯନ୍ତ୍ର ସାହାଯ୍ୟରେ ନିଜ ଶରୀରର ସମସ୍ତ ତତ୍ତ୍ୱ ଜାଣି ପାରୁଛି ଓ ନାନା ମାରାତ୍ମକ ରୋଗର ଅଦୃଶ୍ୟ ଜୀବାଣୁ ନାଶ କରିବା ପାଇଁ ବହୁ ଶକ୍ତିଶାଳୀ ଔଷଧ ଉଦ୍ଭାବନ କରିପାରିଛି । ଏତଦ୍‌ବ୍ୟତୀତ ମନୁଷ୍ୟ ଜୀବନକୁ ସୁଖମୟ କରିବାପାଇଁ ରେଡ଼ିଓ, ସିନେମା, ଟେଲିଭିଜନ ଇତ୍ୟାଦି ବହୁବିଧ ଉପକରଣ ଉଦ୍ଭାବନ କରିଅଛି । ମନୁଷ୍ୟର ଚିନ୍ତାଧାରା ବହୁଦୂର ଅଗ୍ରସର ହୋଇଛି ଓ ଜ୍ଞାନର ପରିସର ବୃଦ୍ଧି ପାଇଛି । ଯେଉଁ ଆଦିମ ମନୁଷ୍ୟ ପ୍ରକୃତିଦତ୍ତ ଗୁମ୍ଫାରେ ଆଶ୍ରୟ ନେଉଥିଲା ଓ ବଣ ଜଙ୍ଗଲରେ ଅନ୍ୟାନ୍ୟ ପଶୁଙ୍କପରି ଅସହାୟଭାବରେ ଭ୍ରମଣ କରୁଥିଲା, ତାହାର ବଂଶଧର ବୁଦ୍ଧିବଳରେ ବର୍ତ୍ତମାନ କେତେଦୂର ଯେ ଉନ୍ନତି କଲଣି, ସେ କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ତେଣୁ

ଯଥାର୍ଥରେ ଆଧୁନିକ ଯୁଗକୁ ବିଜ୍ଞାନର ଯୁଗ ବୋଲି କୁହାଯାଉଛି । ଯେଉଁ ବୈଜ୍ଞାନିକ ଓ ମନୀଷୀମାନେ ଗବେଷଣା କରି ନାନା ବୈଜ୍ଞାନିକ ଉଦ୍ଭାବନ ଦ୍ୱାରା ପୃଥିବୀର ଜନସାଧାରଣଙ୍କ ମଙ୍ଗଳ କରିବା ସଙ୍ଗେ ସଙ୍ଗେ ଆଧୁନିକ ସଭ୍ୟତାର ଅଗ୍ରଗତିରେ ସାହାଯ୍ୟ କରିଛନ୍ତି, ସେମାନଙ୍କ ମଧ୍ୟରୁ କେତେକଙ୍କ ବିଷୟ ନିମ୍ନରେ ବର୍ଣ୍ଣିତ ହେଲା ।

**ଚାର୍ଲସ ଡାରଉଇନ୍**—ପ୍ରସିଦ୍ଧ ଇଂରେଜ ବୈଜ୍ଞାନିକ ଡାରଉଇନ୍ ୧୮୦୯ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ପ୍ରାଣୀ ଜଗତ ଓ ଉଦ୍ଭିଦ ସମ୍ବନ୍ଧରେ ବହୁକାଳ ଗବେଷଣା କରି ୧୮୫୯ ଖ୍ରୀ:ଅ:ରେ ଜୀବମାନଙ୍କର ଉତ୍ପତ୍ତି ସମ୍ବନ୍ଧରେ ଏକ ନୂତନ ତଥ୍ୟ ପ୍ରକାଶ କଲେ । ତାଙ୍କ ମତରେ ପୃଥିବୀରେ ଯେତେ ଜୀବ ଦେଖାଯାଉଛନ୍ତି, ସେମାନେ ସମସ୍ତେ କୋଟି କୋଟି ବର୍ଷର ବହୁ ବିବର୍ତ୍ତନ ପରେ ବର୍ତ୍ତମାନର ଆକାର ଧାରଣ କରିଛନ୍ତି ।


[ ଡାରଉଇନ୍ ]

ପ୍ରତ୍ୟେକ ଜୀବ ବଞ୍ଚି ରହିବା ପାଇଁ ସବୁବେଳେ ଚେଷ୍ଟା କରୁଛି । ଯେଉଁ ଜୀବ ପାରିପାର୍ଶ୍ୱିକ ଅବସ୍ଥା ସହିତ ନିଜକୁ ମିଳାଇ ପାରୁଛି, ସେ ତିଷ୍ଠି ପାରୁଛି । ନଚେତ୍ ତାହାର ସତ୍ତା କ୍ରମେ ଲୋପ ପାଉଛି । ଏହାକୁ ଡାରଉଇନ୍‌ଙ୍କ **ବିବର୍ତ୍ତନବାଦ** (Theory of Evolution) କହନ୍ତି ।

ଏଡ଼ିସନ୍—ପ୍ରସିଦ୍ଧ ବୈଜ୍ଞାନିକ ଏଡ଼ିସନ୍ (୧୮୪୭ ଖ୍ରୀ.ଅ. ୧୯୩୧ ଖ୍ରୀ:ଅ:) ଯୁକ୍ତରାଷ୍ଟ୍ରରେ ଜନ୍ମଗ୍ରହଣ କରିଥିଲେ । ଆଧୁନିକ ସଭ୍ୟତାକୁ ତାଙ୍କର ଦାନ ଅତୁଳନୀୟ । ସେ ତାଙ୍କର ଜୀବନକାଳ ମଧ୍ୟରେ ସର୍ବମୋଟ ତେର ଶହ ପଦାର୍ଥ ଉଦ୍ଭାବନ କରିଥିଲେ । ସେ . ଟେଲିଗ୍ରାଫ, ଟେଲିଫୋନ ଓ ଟାଇପ ରାଇଟର ଯନ୍ତ୍ରର ମଧ୍ୟ ବହୁ ଉନ୍ନତି କରିଥିଲେ । ସେ ଫୋନୋଗ୍ରାଫ, ବାଇସ୍କୋପ ଇତ୍ୟାଦି ଉଦ୍ଭାବନ କରିଥିଲେ । ବିଜୁଳିବତୀ ଉପରେ ସେ ବହୁ ଗବେଷଣା କରି ତାହାର ଉନ୍ନତି ସାଧନ କରିଥିଲେ ।



[ ଏଡିସନ ]

## ମାର୍କୋନି –

(ଖ୍ରୀ: ୧୮୭୪ ୧୯୩୭ଖ୍ରୀ: ସେ ଇଟାଲୀର ଜଣେ ବିଖ୍ୟାତ ବୈଜ୍ଞାନିକ । ସେ ୨୧ ବର୍ଷ ବୟସବେଳେ ବେତାରବାର୍ତ୍ତା ପଠାଇବା ନିମନ୍ତେ ଏକ ଯନ୍ତ୍ର ଉଦ୍ଭାବନ କରିଥିଲେ । ୧୯୧୯ ଖ୍ରୀ:ରେ ମାର୍କୋନି ଲଣ୍ଡନରେ ପ୍ରଥମ ବେତାର କେନ୍ଦ୍ର ସ୍ଥାପନ କରିଥିଲେ । ବେତାର-



[ ମାର୍କୋନି ]

ଯନ୍ତ୍ରର ଉନ୍ନତି ସାଧିତ ହୋଇ ପରେ ଗ୍ରାମୋଫୋନ ରେକର୍ଡ ନିର୍ମିତ ହେଲା । ଆଧୁନିକ ଯୁଗରେ ବେତାର ଯନ୍ତ୍ର ( ରେଡ଼ିଓ ) ଏକ ଅତ୍ୟାବଶ୍ୟକ ଏବଂ ଆମୋଦଦାୟକ ଯନ୍ତ୍ରରୂପେ ପରିଗଣିତ ହୁଏ । ମାର୍କୋନିଙ୍କ ଉଦ୍ଭାବନ ଆଧୁନିକ ମାନବ ସଭ୍ୟତାକୁ ଏକ ବଶିଷ୍ଟ ଦାନ ।

**ଷ୍ଟିଫେନସନ୍** ସ୍ଥଳପଥରେ ଗମନାଗମନ ଓ ପରିବହନ ପାଇଁ ରେଳଗାଡ଼ି ସର୍ବଶ୍ରେଷ୍ଠ ଆଧୁନିକ ଯାନରୂପେ ପରିଗଣିତ । ପ୍ରଥମେ ଟ୍ରିଭେଥିକ୍‌ଙ୍କଦ୍ୱାରା ନିର୍ମିତ ବାଷ୍ପ-ଚାଳିତ ରେଳଇଞ୍ଜିନ୍‌କୁ ଷ୍ଟିଫେନ୍‌ସନ୍ ଉନ୍ନତ କରି ରେଳଗାଡ଼ି ଚଳାଇଲେ ।

**ରାଇଟ୍ ଭ୍ରାତୃଦ୍ୱୟ**—ଊନବିଂଶ ଶତାବ୍ଦୀ ଶେଷ ଭାଗରେ ପେଟ୍ରୋଲ ଗ୍ୟାସ୍ ଚାଳିତ ମୋଟର ଗାଡ଼ି ଓ ମୋଟର ସାଇକେଲ ତିଆରି ହୋଇଥିଲା । ତତ୍ପରେ ଆକାଶରେ ଉଡ଼ିବାପାଇଁ ବିଭିନ୍ନ ଦେଶରେ ବୈଜ୍ଞାନିକମାନେ ବହୁ ଗବେଷଣା ଚଳାଇଥିଲେ । ୧୯୦୪ ଖ୍ରୀଷ୍ଟାବ୍ଦରେ ଆମେରିକାର ଅର୍‌ଭିଲ ରାଇଟ ଓ ଉଇଲବର ରାଇଟ୍ ନାମକ ଦୁଇ ଭାଇ ପେଟ୍ରୋଲ ଇଞ୍ଜିନ ସାହାଯ୍ୟରେ ଆକାଶକୁ ଉଡ଼ିବାରେ କୃତକାର୍ଯ୍ୟ ହୋଇଥିଲେ । ୧୯୦୪ ଖ୍ରୀଷ୍ଟାବ୍ଦରେ ସେମାନେ ଉଡ଼ାଜାହାଜରେ ପ୍ରାୟ ତିନି ମାଇଲ୍ ପର୍ଯ୍ୟନ୍ତ ଉଡ଼ି ପାରିଥିଲେ । କ୍ରମେ ଉଡ଼ାଜାହାଜର ଉନ୍ନତି ହେବାକୁ ଲାଗିଲା । ପ୍ରଥମ ପୃଥିବୀ ମହାସମର ବେଳେ ଜର୍ମାନୀର ବୈଜ୍ଞାନିକମାନେ ଉଡ଼ାଜାହାଜର ଯଥେଷ୍ଟ ଉନ୍ନତି କରିଥିଲେ । ଆଧୁନିକ ଯୁଗରେ ଏହାର ବିଶେଷ ଉନ୍ନତି ସାଧିତ ହୋଇ ପୃଥିବୀର ବିଭିନ୍ନ ଅଞ୍ଚଳକୁ ଡାକ ଓ ଯାତ୍ରୀ ଚଳାଚଳ ହୋଇପାରୁଛି । ଅତି ଅଳ୍ପ ସମୟ ମଧ୍ୟରେ ହଜାର ହଜାର କିଲୋମିଟର ଅତିକ୍ରମ କରି ଦୂର ସ୍ଥାନକୁ ଯିବାପାଇଁ ଉଡ଼ାଜାହାଜ ଏକାନ୍ତ ପ୍ରୟୋଜନ ଅଟେ । ଉଡ଼ାଜାହାଜ

ପ୍ରଚଳନ ହେତୁ ବିଭିନ୍ନ ଜାତି ଓ ଦେଶ ମଧ୍ୟରେ ଘନିଷ୍ଠ ସମ୍ପର୍କ ସ୍ଥାପିତ ହୋଇପାରୁଛି ।

## ଚିକିତ୍ସା ବିଜ୍ଞାନର ଉନ୍ନତି

ଆଧୁନିକ ଯୁଗରେ ବୈଜ୍ଞାନିକମାନେ ରୋଗ ନିବାରଣପାଇଁ ଚିକିତ୍ସା ପ୍ରଣାଳୀରେ ମଧ୍ୟ ଉନ୍ନତି ଘଟାଇଛନ୍ତି । ବିଭିନ୍ନ ସାଂଘାତିକ ରୋଗର ପ୍ରତିଷେଧକମାନ ଉଦ୍ଭାବନ କରି ସେମାନେ ବହୁବିଧ ରୋଗର ନିବାରଣପାଇଁ ବ୍ୟବସ୍ଥା କରିଛନ୍ତି । ଉନ୍ନତ ପ୍ରଣାଳୀରେ ଅସ୍ତ୍ର ଚିକିତ୍ସା କରି ମସ୍ତିଷ୍କ, ଚକ୍ଷୁ, ହୃତ୍‌ପିଣ୍ଡ, ଫୁସ୍‌ଫୁସ୍‌ ପ୍ରଭୃତିରେ ଅସ୍ତ୍ରୋପଚାର କରୁଛନ୍ତି । ଯେଉଁ ବୈଜ୍ଞାନିକମାନଙ୍କର ଉଦ୍ଭାବନ-ଦ୍ୱାରା ଚିକିତ୍ସା ପ୍ରଣାଳୀ ଉନ୍ନତ ହୋଇଅଛି, ସେମାନଙ୍କ ମଧ୍ୟରୁ କେତେକ ପ୍ରଧାନ ବ୍ୟକ୍ତିଙ୍କ ବିଷୟରେ ନିମ୍ନରେ ବର୍ଣ୍ଣନା କରାଗଲା ।

**ଲୁଇ ପାଶ୍ଚ୍ୟୁର**—ରବର୍ଟ କକ୍‌ ନାମକ ଜଣେ ଜର୍ମାନ ଚିକିତ୍ସକ ସର୍ବପ୍ରଥମେ ରୋଗ ଜୀବାଣୁ ଆବିଷ୍କାର କରିଥିଲେ । ଏହାପରେ ଫରାସୀ ବୈଜ୍ଞାନିକ ଲୁଇପାଶ୍ଚ୍ୟୁର ବହୁ ଗବେଷଣା କରି ପ୍ରକାଶ କଲେ ଯେ, ଜୀବାଣୁମାନଙ୍କ ଦ୍ୱାରା ବିଭିନ୍ନ ରୋଗର ଉତ୍ପତ୍ତି ହୁଏ । ପାଶ୍ଚ୍ୟୁର ଆହୁରି ପ୍ରମାଣ କରି-ଥିଲେ ଯେ ଯେଉଁ ଜୀବାଣୁଦ୍ୱାରା ରୋଗ ହୁଏ, ସେହି ଜୀବାଣୁରୁ କେତେକଙ୍କୁ ରକ୍ତ ମଧ୍ୟରେ ପ୍ରବେଶ କରାଇଦେଇ ସେହି ନିର୍ଦ୍ଦିଷ୍ଟ ରୋଗକୁ ପ୍ରତିହତ



[ଲୁଇ ପାଶ୍ଚ୍ୟୁର]

# ଗଣତନ୍ତ୍ର

ଆଧୁନିକ ଯୁଗରେ ପୃଥିବୀରେ ପ୍ରାୟ ଅଧିକାଂଶ ସ୍ୱାଧୀନ ରାଜ୍ୟରେ ଗଣତନ୍ତ୍ର ଶାସନ ପ୍ରବର୍ତ୍ତିତ ହୋଇଅଛି । ଲୋକମାନଙ୍କର ଶାସନକୁ ଗଣତନ୍ତ୍ର ଶାସନ ବୋଲଯାଏ । ଗଣତନ୍ତ୍ର ଶାସନରେ ଲୋକେ ଭୋଟଦ୍ୱାରା ସେମାନଙ୍କର ପ୍ରତିନିଧି ନିର୍ବାଚନ କରନ୍ତି । ସେହି ପ୍ରତିନିଧିମାନେ ଦେଶପାଇଁ ଆଇନ୍ ପ୍ରଣୟନ କରନ୍ତି । ସାଧାରଣ ଲୋକଙ୍କଠାରେ ପ୍ରତିନିଧି ନିର୍ବାଚିତ କରିବା କ୍ଷମତା ନ୍ୟସ୍ତ ହେବା ଦ୍ୱାରା ଗଣତନ୍ତ୍ର ଶାସନରେ ସ୍ୱେଚ୍ଛାଚାରୀ ଶାସନ ସମ୍ଭବ ନୁହେଁ କିମ୍ବା ରାଜତନ୍ତ୍ର ଶାସନ ଭଳି ମୁଷ୍ଟିମେୟ ବଡ଼-ବଡ଼ଆଙ୍କ ଶାସନ ହେବା ସମ୍ଭବ ନୁହେଁ । ଗଣତନ୍ତ୍ର ଶାସନର ମହତ୍ତ୍ୱ ଏହି ଯେ, ଯେଉଁ ବ୍ୟକ୍ତି ଅଧିକ ଯୋଗ୍ୟ ସାଧାରଣ ଲୋକେ ତାଙ୍କୁ ଶାସନ ଭାର ଦେଇଥାନ୍ତି । ତେଣୁ ଯୁକ୍ତରାଷ୍ଟ୍ର ଆମେରିକାର ସଭାପତି ଆବ୍ରାହମ୍ ଲିଙ୍କନ୍ କହିଥିଲେ ଯେ, "ଗଣତନ୍ତ୍ର ଶାସନରେ ସାଧାରଣ ଲୋକ ନିଜେ ନିଜ ପାଇଁ ଶାସନ ଚଳାଏ ।"

**ଭାରତ ଓ ଅନ୍ୟାନ୍ୟ ଦେଶମାନଙ୍କରେ ଗଣତନ୍ତ୍ର ଶାସନର ପ୍ରସାର**—ଫରାସୀ ରାଷ୍ଟ୍ରବିପ୍ଳବ ଫଳରେ ଫ୍ରାନ୍ସରୁ ରାଜତନ୍ତ୍ର ଶାସନ ଲୋପପାଇ ଗଣତନ୍ତ୍ର ଶାସନ ପ୍ରବର୍ତ୍ତିତ ହେଲା । ଏହାର ପ୍ରଭାବ ଧୀରେ ଧୀରେ ସମଗ୍ର ୟୁରୋପରେ ବ୍ୟାପ୍ତ ହୋଇଥିଲା । କ୍ରମେ ରୁଷିଆ, ପୋଲାଣ୍ଡ, ଜର୍ମାନୀ, ସ୍ପେନ୍, ଇଟାଲୀ ଓ ଯୁଗୋସ୍ଲାଭିଆ ପ୍ରଭୃତି ୟୁରୋପର ବିଭିନ୍ନ ଦେଶରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହୋଇଥିଲା । ଉତ୍ତର-ଆମେରିକା, ଦକ୍ଷିଣ-ଆମେରିକା, ଅଷ୍ଟ୍ରେଲିଆରେ ମଧ୍ୟ ଗଣତନ୍ତ୍ର ଶାସନ ପ୍ରବର୍ତ୍ତିତ ହୋଇଅଛି । ପୃଥିବୀରେ ଦ୍ୱିତୀୟ ମହାସମର ଶେଷହେବା

ପରେ ଅନେକ ଦେଶରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହୋଇଅଛି । ଜର୍ମାନୀ ଦୁଇଭାଗ ହୋଇ ପୂର୍ବ ଜର୍ମାନୀରେ ରୁଷିଆର ସାମ୍ୟବାଦ ପ୍ରଚଳିତ ହୋଇଅଛି ଓ ପଶ୍ଚିମ ଜର୍ମାନୀରେ ରୁଷିଆର ସାମ୍ୟବାଦ ପ୍ରତିଷ୍ଠିତ ହୋଇଛି । ଜାପାନରେ ମଧ୍ୟ ରାଜତନ୍ତ୍ର ବଦଳରେ ଗଣତନ୍ତ୍ର ଶାସନ ଚାଲିଛି । ଏହି ଆଧୁନିକ ଯୁଗରେ ତୁର୍କି, ସିରିଆ, ଇସରାଏଲ, ଆଫ୍ରିକାର ମିଶର, ସୁଦାନ, କେନିଆ ଓ ଅନ୍ୟାନ୍ୟ ରାଜ୍ୟ ଓ ପୂର୍ବ ଏସିଆର ଇଣ୍ଡୋନେସିଆ, ବ୍ରହ୍ମଦେଶ, ମାଲେସିଆ ପ୍ରଭୃତି ରାଜ୍ୟରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହୋଇଛି । ଚୀନରେ ମଧ୍ୟ ସାମ୍ୟବାଦ ସରକାର ପ୍ରତିଷ୍ଠିତ ହୋଇଅଛି ।

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତବାସୀମାନେ ଅହିଂସା ଆନ୍ଦୋଳନ ବହୁଦିନ ପର୍ଯ୍ୟନ୍ତ ଚଳାଇ ଶେଷରେ ସ୍ୱାଧୀନତା ପ୍ରାପ୍ତିରେ ଜୟଯୁକ୍ତ ହେଲେ । ୧୯୪୭ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୧୫ ତାରିଖରେ ଭାରତବର୍ଷ ଭାରତ ଯୁକ୍ତରାଜ୍ୟ ଓ ପାକିସ୍ଥାନ, ଦୁଇଟି ରାଷ୍ଟ୍ରରେ ବିଭକ୍ତ ହୋଇ ବ୍ରିଟିଶ ସରକାରଙ୍କ ଶାସନାଧୀନରୁ ମୁକ୍ତ ହେଲା । ଏହାପରେ ଭାରତ ଯୁକ୍ତରାଜ୍ୟର ନୂତନ ସମ୍ବିଧାନ ତିଆରି ହେଲା ଓ ତଦନୁସାରେ ସାର୍ବଜନିକ ଭୋଟଦ୍ୱାରା ଗଣତାନ୍ତ୍ରିକ ସରକାର ଗଠିତ ହୋଇ ଦେଶରେ ଶାସନ କାର୍ଯ୍ୟ ପରିଚାଳିତ ହେଉଅଛି । ରାଷ୍ଟ୍ରପତି ଡ. ଜାକିର୍ ହୁସେନଙ୍କ ମୃତ୍ୟୁ ପରେ ବର୍ତ୍ତମାନ ଭି. ଭି. ଗିରି ରାଷ୍ଟ୍ରପତି ଏବଂ ଇନ୍ଦିରା ଗାନ୍ଧୀ ଭାରତର ପ୍ରଧାନମନ୍ତ୍ରୀ


[ମହାତ୍ମାଗାନ୍ଧୀ]

ଅଟନ୍ତି । ଭାରତରେ ପଞ୍ଚବାର୍ଷିକ ଯୋଜନାମାନ କାର୍ଯ୍ୟକାରୀ ହୋଇ ଲୋକମାନଙ୍କର ତଥା ଦେଶର ଆର୍ଥିକ ଉନ୍ନତିପାଇଁ ଚେଷ୍ଟା କରାଯାଉଛି । ଏହାଦ୍ୱାରା ଅଳ୍ପକାଳ ମଧ୍ୟରେ ଭାରତରେ ଗଣତନ୍ତ୍ର ଶାସନ ବିପୁଳ ସାଫଲ୍ୟମଣ୍ଡିତ ହୋଇଅଛି ।

## ଏକ ଓ ଅବିଚ୍ଛିନ୍ନ ପୃଥିବୀସରକାର ଗଠନରପରିକଳ୍ପନା

ପୃଥିବୀ ଇତିହାସରେ ବହୁ ବିପ୍ଳବ ଓ ବହୁ ଯୁଦ୍ଧ ଘଟିଯାଇଛି, ମାତ୍ର ବିଂଶ ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ମହାସମର ସଙ୍ଗେ ଅତୀତର କୌଣସି ଯୁଦ୍ଧ ତୁଳନୀୟ ନୁହେଁ । ବିଜ୍ଞାନର କ୍ରମୋନ୍ନତି ଫଳରେ ଏକ ଦିଗରେ ମଣିଷର ସୁଖ-ସ୍ୱାଚ୍ଛନ୍ଦ୍ୟ ବଢ଼ିବା ସଙ୍ଗେ ସଙ୍ଗେ ଅନ୍ୟ ଦିଗରେ ବିଭିନ୍ନ ପ୍ରଳୟଙ୍କରୀ ମାରଣାସ୍ତ୍ର ତିଆରି ହେବାଦ୍ୱାରା ପୃଥିବୀର ସମଗ୍ର ମାନବଜାତି ଧ୍ୱଂସ ପାଇଯିବାର ଆଶଙ୍କା ରହିଛି ।

ବୃହତ୍ ଶକ୍ତିମାନଙ୍କ ମଧ୍ୟରେ ସୁସମ୍ପର୍କ ସ୍ଥାପିତ ହୋଇପାରିଲେ, ବିବାଦ ଉପୁଜିଲେ ତାଙ୍କର ଶାନ୍ତିପୂର୍ଣ୍ଣ ସମାଧାନ ହୋଇପାରିଲେ କିମ୍ବା ବିଶ୍ୱଶାନ୍ତିକୁ ବିପନ୍ନ କରୁଥିବା ଶକ୍ତି ବିରୁଦ୍ଧରେ ସାମୂହିକ ଶକ୍ତି ପ୍ରୟୋଗ କଲେ ତୃତୀୟ ପୃଥିବୀ ଯୁଦ୍ଧ ଏଡ଼ାଇ ଦିଆଯାଇପାରିବ, ଏହା ହିଁ ଅନେକ ଚିନ୍ତାଶୀଳ ରାଷ୍ଟ୍ର-ନାୟକଙ୍କ ମତ ଓ ବିଶ୍ୱାସ । ଏହି କଳ୍ପନାକୁ କାର୍ଯ୍ୟକାରୀ କରିବା-ପାଇଁ ଯୁକ୍ତରାଷ୍ଟ୍ରର ସଭାପତି ଉଇଲ୍‌ସନ ପ୍ରଥମ ମହାସମର ପରେ ୧୯୧୯ ମସିହାରେ ପ୍ୟାରିସ୍‌ଠାରେ ଏକ ଶାନ୍ତି ସମ୍ମିଳନୀ ଡକାଇ-ଥିଲେ । ତାଙ୍କ ଚେଷ୍ଟାରେ ବିଭିନ୍ନ ଦେଶର ପ୍ରତିନିଧିମାନଙ୍କୁ ନେଇ ଜାତିସଂଘ (League of Nation) ଗଢ଼ାଗଲା । ଆନ୍ତର୍ଜାତିକ ସହଯୋଗ ପ୍ରତିଷ୍ଠା ଓ ଯୁଦ୍ଧ ବନ୍ଦ କରି ଆନ୍ତର୍ଜାତିକ ଶାନ୍ତି ଓ

ନିରାପତ୍ତା ରକ୍ଷା କରିବା ଏହି ଅନୁଷ୍ଠାନର ଲକ୍ଷ୍ୟ ଥିଲା; ମାତ୍ର କେତେକ ସ୍ୱାର୍ଥପର ରାଜ୍ୟ ଜାତିସଂଘକୁ ନିଜ ସ୍ୱାର୍ଥସାଧନ ଉଦ୍ଦେଶ୍ୟରେ ପ୍ରୟୋଗ କରିବାରୁ ଏହି ଅନୁଷ୍ଠାନ ଉପରୁ କ୍ରମେ ଅନ୍ୟମାନଙ୍କର ଆସ୍ଥା ତୁଟିଗଲା । ଶେଷରେ ଯେତେବେଳେ ବଡ଼ ବଡ଼ ଶକ୍ତି, ଯଥା—ଜାପାନ ମାଞ୍ଚୁରିଆ ଆକ୍ରମଣ କଲା, ଇଟାଲି ଆବିସିନିଆ ଆକ୍ରମଣ କଲା ଓ ଜର୍ମାନୀ ପୋଲଣ୍ଡ ଆକ୍ରମଣ କଲା, ସେତେବେଳେ ଜାତିସଂଘର ମୃତ୍ୟୁ ଘଟିଲା । ୧୯୩୯ ଖ୍ରୀଷ୍ଟାବ୍ଦରେ ପୃଥିବୀରେ ଦ୍ୱିତୀୟ ମହାସମର ଆରମ୍ଭ ହେଲା ।

**ମିଳିତ ଜାତିସଂଘ** (United Nations Organisation)—ପ୍ରଥମ ମହାସମର ଅପେକ୍ଷା ଦ୍ୱିତୀୟ ମହାସମର ଅଧିକ ଭୟାବହ ଓ ମାରାତ୍ମକ ହୋଇଥିଲା । ଏହି ଯୁଦ୍ଧର ଭୟାବହ ପରିଣତି ପୃଥିବୀରେ ଆତଙ୍କ ସୃଷ୍ଟି କଲା । ଦ୍ୱିତୀୟ ମହାସମର ଚାଲିଥିବାବେଳେ ଇଂଲଣ୍ଡର ତତ୍କାଳୀନ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ଓ ଯୁକ୍ତରାଷ୍ଟ୍ରର ସଭାପତି ରୁଜ୍‌ଭେଲଟ ପୃଥିବୀରେ ଯୁଦ୍ଧ ବନ୍ଦ କରି ଚିରଶାନ୍ତି ପ୍ରତିଷ୍ଠା କରିବାକୁ ଉଦ୍ୟମ କଲେ । ଭବିଷ୍ୟତରେ ଯେପରି ଆଉ ବିଶ୍ୱଯୁଦ୍ଧ ନ ହୁଏ, ସେଥିପାଇଁ ଏକ ଶକ୍ତିଶାଳୀ ଅନୁଷ୍ଠାନ ଗଠନ କରିବା ନିମନ୍ତେ ପୃଥିବୀର ବହୁଆଡ଼େ ଲୋକେ ଆଗ୍ରହ ପ୍ରକାଶ କଲେ । ଏହା ଫଳରେ ମିଳିତ ଜାତିସଂଘ ସୃଷ୍ଟି ହେଲା ।

୧୯୪୫ ଖ୍ରୀଷ୍ଟାବ୍ଦ ଜୁନ୍ ୨୬ ତାରିଖରେ ୫୧ଟି ରାଜ୍ୟର ପ୍ରତିନିଧିମାନେ ଆମେରିକାର ସାନ୍‌ଫ୍ରାନ୍‌ସିସ୍‌କୋଠାରେ ମିଳିତ ହୋଇ ମିଳିତ ଜାତି ସଂଘର ସନନ୍ଦରେ ସ୍ୱାକ୍ଷର କଲେ । ପୃଥିବୀରେ ଯୁଦ୍ଧ ବନ୍ଦ କରିବା, ଦେଶ ଦେଶ ମଧ୍ୟରେ ବିବାଦ

ଉପୁଜିଲେ ତାହା ନିଷ୍ପତ୍ତି କରିବା, ଅସ୍ତ୍ର ଶସ୍ତ୍ର ତିଆରି ଓ ବ୍ୟବହାର ନିୟନ୍ତ୍ରଣ କରିବା, ଅନୁନ୍ନତ ଦେଶମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ, ଶିଳ୍ପର ବିକାଶ କରିବା ଓ ଆର୍ଥିକ ଉନ୍ନତି କରିବା ମିଳିତ ଜାତି ସଂଘର ଲକ୍ଷ୍ୟ । ମିଳିତ ଜାତି ସଂଘରେ କ୍ରମେ କ୍ରମେ



[ ମିଳିତ ଜାତିସଂଘର ସଙ୍କେତ ]

ଅଧିକ ସ୍ୱାଧୀନ ଦେଶ ଯୋଗ ଦେବାଦ୍ୱାରା ବର୍ତ୍ତମାନ ଏହାର ସଭ୍ୟ ସଂଖ୍ୟା ୧୨୬ ହୋଇଛି ଓ ଭବିଷ୍ୟତରେ ଏହା ଆହୁରି ବଢ଼ିବାର ସମ୍ଭାବନା ଅଛି ।

ଏହି ସଙ୍ଗଠନର କାର୍ଯ୍ୟ ପରିଚାଳନା ନିମନ୍ତେ ଏକ ସାଧାରଣ ସଭା (General Assembly) ଏବଂ ଏକ ନିରାପତ୍ତା ପରିଷଦ (Security Council) ଅଛି । ଏହି ସଙ୍ଗଠନରେ ଯୋଗ ଦେଇ ଥିବା ସବୁ ରାଜ୍ୟର ପ୍ରତିନିଧି ସାଧାରଣ ସଭାର ସଭ୍ୟ ଅଟନ୍ତି । ନିରାପତ୍ତା ପରିଷଦର ସଭ୍ୟ ସଂଖ୍ୟା ଏଗାର । ସେଥିରୁ ଯୁକ୍ତରାଷ୍ଟ୍ର, ଇଂଲଣ୍ଡ, ରୁଷିଆ, ଫ୍ରାନ୍ସ ଓ ଚୀନ୍ (ବର୍ତ୍ତମାନର କମ୍ୟୁନିଷ୍ଟ ଶାସିତ ଚୀନ୍ ନୁହେଁ ) ସ୍ଥାୟୀ ସଭ୍ୟ ଓ ଅନ୍ୟ ଛଅଜଣ ସାଧାରଣ ସଭାଦ୍ୱାରା ନିର୍ବାଚିତ ହୋଇ ସ୍ଥାନ ପାଇଥାନ୍ତି । ସ୍ଥାୟୀ ସଭ୍ୟମାନଙ୍କ ମଧ୍ୟରୁ ଜଣେ କୌଣସି ପ୍ରସ୍ତାବରେ ଅସମ୍ମତ ହେଲେ ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରିବ ନାହିଁ ।

ସାଧାରଣ ସଭା ଓ ନିରାପତ୍ତା ପରିଷଦ ପ୍ରଧାନତଃ ପୃଥିବୀର ରାଜନୈତିକ ଶାନ୍ତିପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରନ୍ତି । ଏହି ଦୁଇଟି ପ୍ରଧାନ ଶାଖା ବ୍ୟତୀତ ମିଳିତ ଜାତିସଂଘର ଆଉ ଚାରୋଟି ଶାଖା ଅଛି, ଯଥା—ଅର୍ଥନୈତିକ ଓ ସାମାଜିକ ପରିଷଦ (Economic and Social Council), ବିଶ୍ୱ ବିଚାରାଳୟ (International Court of Justice), ଯାରପତ୍ତଦାର ପରିଷଦ (Trusteeship Council ) ଓ ସଚିବାଳୟ (Secretariate) । ଏଗୁଡ଼ିକ ଛଡ଼ା ବିଶ୍ୱ ବ୍ୟାଙ୍କ (World Bank), ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ (W. H. O. ), ମିଳିତ ଜାତି ଶିକ୍ଷା ବିଜ୍ଞାନ ସାଂସ୍କୃତିକ ସଙ୍ଗଠନ (U. N. E. S. C. O.) ମିଳିତ ଜାତି ଶ୍ରମିକ ସଙ୍ଗଠନ (U. L. O.) ଇତ୍ୟାଦି ଅନୁଷ୍ଠାନମାନ ଜାତିସଂଘ ଅଧୀନରେ ପରିଚାଳିତ ହୋଇ ପୃଥିବୀରେ ବିଭିନ୍ନ ଜନହିତକର କାର୍ଯ୍ୟ କରୁଛନ୍ତି ।

ମିଳିତଜାତି ସଂଘରେ ପୃଥିବୀର ପ୍ରାୟ ସବୁ ଅଞ୍ଚଳରୁ ସଭ୍ୟମାନେ ଯୋଗ ଦେଇ ପୃଥିବୀରେ ଶାନ୍ତିରକ୍ଷାଜନିତ ନାନା ସମସ୍ୟାମାନ ବିଚାର କରନ୍ତି । ଏହା ଫଳରେ ବିଭିନ୍ନ ଦେଶ ମଧ୍ୟରେ ସଦ୍‌ଭାବ ବୃଦ୍ଧି ପାଉଛି ଓ ଅଶିକ୍ଷିତ ଦେଶାତ୍ମବୋଧ କ୍ରମେ ବିଶ୍ୱଭାବରେ ପରିଣତ ହେଉଛି ।

ମିଳିତ ଜାତିସଂଘ ସୃଷ୍ଟି ହେଲେ ମଧ୍ୟ ଏପର୍ଯ୍ୟନ୍ତ ପୃଥିବୀର ସବୁ ଦେଶ ଲୋକଙ୍କ ମନରୁ ଯୁଦ୍ଧଭୟ ଦୂର ହୋଇପାରି-ନାହିଁ; ତଥାପି ମିଳିତ ଜାତିସଂଘ ବହୁ କ୍ଷେତ୍ରରେ ବିଭିନ୍ନ ଦେଶ ମଧ୍ୟରେ ଘଟିଥିବା ଯୁଦ୍ଧ ବନ୍ଦକରି ପୃଥିବୀରେ ଶାନ୍ତିସ୍ଥାପନ କରିବାକୁ ସକ୍ଷମ ହୋଇଅଛି । ୧୯୪୭ ଖ୍ରୀଷ୍ଟାବ୍ଦରେ ପାକିସ୍ତାନ ସ୍ୱାଧୀନରାଜ୍ୟ କାଶ୍ମୀର ଉପରେ ଅନ୍ୟାୟ ଆକ୍ରମଣ କଲାବେଳେ ଭାରତ କାଶ୍ମୀରକୁ ସାହାଯ୍ୟ ଦେଇଥିଲା । ସେତେବେଳେ କାଶ୍ମୀର ବିଷୟନେଇ ଭାରତ ଓ ପାକିସ୍ତାନ ମଧ୍ୟରେ ଲାଗିଥିବା ଯୁଦ୍ଧ ଜାତିସଂଘର ହସ୍ତକ୍ଷେପଯୋଗୁଁ ବନ୍ଦ ହୋଇ ପାରିଥିଲା । ସେହିପରି ଦକ୍ଷିଣ-କୋରିଆ ଓ ଉତ୍ତର-କୋରିଆ ମଧ୍ୟରେ ଚାଲିଥିବା ଯୁଦ୍ଧର ଶାନ୍ତିପୂର୍ଣ୍ଣ ସମାଧାନ, ଡଚ୍ ଓ ଇଣ୍ଡୋନେସିଆ ବିବାଦ, ହଙ୍ଗେରିର ଆଭ୍ୟନ୍ତରୀଣ ସମସ୍ୟା ଉପରୁ ରୁଷ୍ ହସ୍ତକ୍ଷେପ ବନ୍ଦକରିବା, ତୁର୍କିରାଜ୍ୟରୁ ରୁଷ ସୈନ୍ୟ ଅପସାରଣ, ପାଲେଷ୍ଟାଇନ୍ ସମସ୍ୟା ସମାଧାନ, ବେଲ୍‌ଜିୟମ ଅଧୀନରୁ କଙ୍ଗୋରେ ସ୍ୱାଧୀନତା ଘୋଷଣା ଓ କଙ୍ଗୋର ଜାତିସଂଘ ସେନାଦ୍ୱାରା ଅନ୍ତର୍ଯୁଦ୍ଧର ଅବସାନ, କ୍ୟୁବାରେ ଶାନ୍ତି ସ୍ଥାପନ ଇତ୍ୟାଦି ଜାତିସଂଘର ବିଶ୍ୱଶାନ୍ତି ପ୍ରତି ଅତି ଗୁରୁତ୍ୱପୂର୍ଣ୍ଣ ଅବଦାନ ।

ପୃଥିବୀବାସୀ ଜାତିସଂଘର ଅଭିବୃଦ୍ଧି ଓ ଅଗ୍ରଗତି ସବୁବେଳେ କାମନା କରନ୍ତି । ପୃଥିବୀର ଭବିଷ୍ୟତ ସୁଖ ଶାନ୍ତି ବହୁପରିମାଣରେ ମିଳିତ ଜାତିସଂଘର ସାଫଲ୍ୟ ଉପରେ ନିର୍ଭର କରେ । ଏହାର ମହତ୍ ଉଦ୍ଦେଶ୍ୟ କିପରି ସଫଳ ହେଉ, ତାହାହିଁ ସମଗ୍ର ମାନବ-ଜାତିର ଧ୍ୟେୟ ହେବା ଉଚିତ ।

— – —

# ପ୍ରଶ୍ନାବଳୀ

## ପ୍ରଥମ ଅଧ୍ୟାୟ

୧ । ପୃଥିବୀରେ ପ୍ରଥମ ପ୍ରକୃତ ମନୁଷ୍ୟ ଓ ନିଏଣ୍ଡ୍ରାର୍ଥାଲ ମନୁଷ୍ୟମାନଙ୍କ ମଧ୍ୟରେ କି ପାର୍ଥକ୍ୟ ଥିଲା ବର୍ଣ୍ଣନା କର ।

୨ । ପୁରାତନ ପ୍ରସ୍ତର ଯୁଗର ଲୋକମାନଙ୍କର ବାସସ୍ଥାନ, ଅସ୍ତ୍ରଶସ୍ତ୍ର ଓ ଜୀବନଯାପନ ପ୍ରଣାଳୀ ବର୍ଣ୍ଣନା କର ।

## ଦ୍ୱିତୀୟ ଅଧ୍ୟାୟ

୧ । ନୂତନ ପ୍ରସ୍ତର ଯୁଗର ଲୋକମାନେ କିପରି ଭାବରେ ପୁରାତନ ପ୍ରସ୍ତର ଯୁଗର ଲୋକମାନଙ୍କଠାରୁ ପୃଥକ୍ ଥିଲେ ? ସେମାନଙ୍କର ଖାଦ୍ୟ, ପରିଧେୟ, ବାସସ୍ଥାନ, ଜୀବିକା ଓ ସାମାଜିକ ପ୍ରଥା କିପରି ଥିଲା ?

## ତୃତୀୟ ଅଧ୍ୟାୟ

୧ । ପୃଥିବୀରେ କେଉଁ କେଉଁ ଅଞ୍ଚଳରେ ଲୋକେ ପ୍ରଥମେ ସ୍ଥାୟୀଭାବରେ ବାସକଲେ ଓ କାହିଁକି ?

୨ । ସ୍ଥାୟୀ ଅଧିବାସୀ ଓ ଯାଯାବର ଲୋକମାନଙ୍କ ସଭ୍ୟତା ମଧ୍ୟରେ କି ପାର୍ଥକ୍ୟ ଦେଖାଯାଏ ?

୩ । ପୃଥିବୀରେ କେତେ ପ୍ରକାର ଯାଯାବର ଜାତି ଦେଖାଯାଉଥିଲେ ଓ ସେମାନଙ୍କ ଦେହର ଆକୃତି କିପରି ଥିଲା ?

## ଚତୁର୍ଥ ଅଧ୍ୟାୟ

୧ । ମହେଞ୍ଜୋଦାରୋ ଓ ହରପ୍ପା ଧ୍ୱଂସାବଶେଷରୁ ଦ୍ରାବିଡ଼ମାନଙ୍କର ଖାଦ୍ୟପେୟ, ପରିଧେୟ, ଶିଳ୍ପକଳା, ଧର୍ମଜୀବନ, ଅସ୍ତ୍ର ଶସ୍ତ୍ର ଓ ଗୃହପାଳିତ ପଶୁ ସମ୍ବନ୍ଧରେ କ'ଣ ଜଣାପଡ଼େ ?

୨ । ଦ୍ରାବିଡ଼ମାନଙ୍କର ନଗର ସଙ୍ଗଠନ ସମ୍ବନ୍ଧରେ ଏକ ଟିପ୍ପଣୀ ଲେଖ ।

## ପଞ୍ଚମ ଅଧ୍ୟାୟ

୧ । ଜୋରୋଷ୍ଟର କିଏ ? ତାଙ୍କ ଧର୍ମନୀତି ବିଶଦଭାବରେ ବର୍ଣ୍ଣନା କର ।

୨ । ଟିପ୍ପଣୀ ଲେଖ—
ଜେନ୍ଦାଭେସ୍ତା, ଅଲିମ୍ପିଆ, ବର୍ଣ୍ଣାଶ୍ରମ, ଏଥେନ୍‌ସ ଓ ସ୍ପାର୍ଟା ।

୩ । ନଗର ରାଜ୍ୟ କାହାକୁ କହନ୍ତି ? ସ୍ପାର୍ଟା ଓ ଏଥେନ୍‌ସ ମଧ୍ୟରେ କି ପାର୍ଥକ୍ୟ ଥିଲା ?

୪ । ଜୁଲିୟସ୍ ସିଜରଙ୍କର ରାଜ୍ୟଜୟ ଓ ଦେଶଶାସନ ସଂକ୍ଷେପରେ ବର୍ଣ୍ଣନା କର ।

୫ । ଅଗଷ୍ଟସ୍ ସିଜରଙ୍କ ଶାସନ କାଳକୁ କାହିଁକି ରୋମ୍ ଇତିହାସରେ ସୁବର୍ଣ୍ଣଯୁଗ କୁହାଯାଏ ?

୬ । ଭାରତୀୟ ଆର୍ଯ୍ୟମାନଙ୍କର ସାମାଜିକ ଜୀବନ ଓ ଶାସନ ପ୍ରଣାଳୀ ବର୍ଣ୍ଣନା କର ।

୭ । ନର୍ଡ଼ିକ୍ ଆର୍ଯ୍ୟ କେଉଁମାନଙ୍କୁ କୁହାଯାଏ ? ସେମାନଙ୍କର ଶ୍ରେଷ୍ଠ ସମ୍ରାଟଙ୍କର କାର୍ଯ୍ୟ ବର୍ଣ୍ଣନା କର ।

## ଷଷ୍ଠ ଅଧ୍ୟାୟ

୧ । ସଂକ୍ଷିପ୍ତ ଟିପ୍ପଣୀ ଦିଅ—
ଜେହୋବାଙ୍କ ଦଶ ଆଜ୍ଞା, ମୋଷା, ଜେକବ, ପ୍ରାଚୀନ ଟେଷ୍ଟାମେଣ୍ଟ ।

୨ । ହିବ୍ରୁମାନଙ୍କ ଧର୍ମର ସାରତତ୍ତ୍ୱ କଣ ?

## ସପ୍ତମ ଅଧ୍ୟାୟ

୧ । ଗୌତମ ବୁଦ୍ଧଙ୍କଦ୍ୱାରା ପ୍ରଚଳିତ ଧର୍ମମତ ବର୍ଣ୍ଣନା କର । ତାଙ୍କୁ କାହିଁକି ଏସିଆର ଆଲୋକ କୁହାଯାଏ ?

୨ । ଲାଓସି କିଏ ? ତାଙ୍କଦ୍ୱାରା ପ୍ରଚଳିତ ଧର୍ମମତର ମୂଳତତ୍ତ୍ୱ କ'ଣ ?

୩ । କନ୍‌ଫୁସିୟସ୍ ମନୁଷ୍ୟମାନଙ୍କ ଉନ୍ନତି ନିମନ୍ତେ କି ଉପଦେଶ ଦେଇଥିଲେ ?

## ଅଷ୍ଟମ ଅଧ୍ୟାୟ

୧ । ପେରିକ୍ଲିସ୍‌ଙ୍କ ଶାସନକାଳକୁ ଗ୍ରୀସ୍‌ର ସୁବର୍ଣ୍ଣଯୁଗ ବୋଲି କାହିଁକି କୁହାଯାଏ ?

୨ । ଆଲେକ୍‌ଜାଣ୍ଡରଙ୍କ ଯୋଗୁଁ କିପରି ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତାର ମିଳନ ହୋଇଥିଲା ବୁଝାଅ ।

## ନବମ ଅଧ୍ୟାୟ

୧ । ଫିନିସୀୟମାନେ ସୁନାବିକ ହେବାର କାରଣ କ'ଣ ? ସେମାନେ କେଉଁ ଦେଶରେ ବାଣିଜ୍ୟ କାରବାର କରୁଥିଲେ ?

୨ । ଫିନିସୀୟମାନେ କିପରି ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତାର ବାହକ ଥିଲେ ବର୍ଣ୍ଣନା କର ।

## ଦଶମ ଅଧ୍ୟାୟ

୧ । ଯୀଶୁଙ୍କଦ୍ୱାରା ପ୍ରଚଳିତ ଧର୍ମର ମୂଳତତ୍ତ୍ୱ କ'ଣ ? ଇହୁଦୀମାନେ କାହିଁକି ଯୀଶୁଙ୍କ ଶତ୍ରୁ ହେଲେ ?

## ଏକାଦଶ ଅଧ୍ୟାୟ

୧ । ଇସଲାମ ଧର୍ମର ସାରତତ୍ତ୍ୱ କ'ଣ ? ଏହା କିପରି ପ୍ରସାର ଲାଭ କରିଥିଲା ?

୨ । ଆରବ ସଭ୍ୟତାର ପୃଥିବୀକୁ ଦାନ କ’ଣ ?
୩ । ସଂକ୍ଷିପ୍ତ ଟିପ୍ପଣୀ ଲେଖ—
ହିଜିରା, କୋରାନ, ହାରୁନ୍-ଅଲ୍-ରସିଦ୍, ଖଲିଫା ।

## ଦ୍ୱାଦଶ ଅଧ୍ୟାୟ

୧ । ପଶ୍ଚିମ ୟୁରୋପରେ କପରି ଜ୍ଞାନର ପୁନର୍ଜାଗରଣ ଘଟିଥିଲା ?
୨ । ଟିପ୍ପଣୀ ଲେଖ—
ରୋଜର ବେକନ୍, ଜନ୍ ଗଟେନ୍‌ବର୍ଗ, ଧର୍ମଯୁଦ୍ଧ, ଦାନ୍ତେ ।

## ତ୍ରୟୋଦଶ ଅଧ୍ୟାୟ

୧ । ମାର୍କୋପୋଲଙ୍କ ଭ୍ରମଣବୃତ୍ତାନ୍ତ ପୁସ୍ତକର ଗୁରୁତ୍ୱ ବର୍ଣ୍ଣନା କର ।
୨ । ସଂକ୍ଷିପ୍ତ ଟିପ୍ପଣୀ ଲେଖ—
କୁବ୍‌ଲାଇ ଖାଁ, କଲମ୍ବସ, ମାଜେଲାନ୍, ଫ୍ରାନ୍‌ସିସ୍ ଡ୍ରେକ୍ ।

## ଚତୁର୍ଦ୍ଦଶ ଅଧ୍ୟାୟ

୧ । ଚେଙ୍ଗିଜ ଖାଁ କପରି ବିରାଟ ସାମ୍ରାଜ୍ୟ ସ୍ଥାପନ କରିଥିଲେ ବର୍ଣ୍ଣନା କର ।
୨ । କ୍ରୁସେଡ୍ ଯୁଦ୍ଧର କାରଣ ଓ ଫଳାଫଳ ବର୍ଣ୍ଣନା କର ।
୩ । କନଷ୍ଟାଣ୍ଟିନୋପଲରୁ ଗ୍ରୀକ୍ ସଭ୍ୟତା ୟୁରୋପରେ କାହିଁକି ପ୍ରସାରିତ ହୋଇଥିଲା ?

## ପଞ୍ଚଦଶ ଅଧ୍ୟାୟ

୧ । ଜନ୍ ଉଇକ୍ଲିଫଙ୍କୁ କାହିଁକି ‘ଧର୍ମସଂସ୍କାରର ପ୍ରଭାତ ତାରା’ ବୋଲି କୁହାଯାଏ ?
୨ । ମାର୍ଟିନ୍ ଲୁଥର କପରି ଖ୍ରୀଷ୍ଟଧର୍ମର ସଂସ୍କାର କରିବାକୁ ଚେଷ୍ଟା କରିଥିଲେ ଓ ତାଙ୍କ ଚେଷ୍ଟାର ଫଳ କ’ଣ ହୋଇଥିଲା ?